# ଆମ ଗଛ
# ଆମ ଔଷଧ

ପ୍ରସ୍ତୁତି :-



ଜନ କଲ୍ୟାଣ ଯୁବକ ସଂଘ

ପୋଡ଼ଙ୍ଗ, ଡେଇଶିପୁର, ପୁରୀ

# ଆମ ଗଛ
# ଆମ ଔଷଧ

-: ପ୍ରସ୍ତୁତି :-

**ଜନ କଲ୍ୟାଣ ଯୁବକ ସଂଘ**

ପୋଡ଼ଙ୍ଗ, ତେଇଶିପୁର, ପୁରୀ

# ସୂଚୀପତ୍ର

# ପଦେ ଅଧେ

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସମାଜରେ ସୁସ୍ଥ ଓ ସବଳ ରୂପେ ଜୀବନଯାପନ କରିବା ନିମନ୍ତେ ପ୍ରତ୍ୟେକ ମନୁଷ୍ୟର ଯେପରି ଖାଦ୍ୟ, ବସ୍ତ୍ର ଓ ବାସଗୃହର ନିତ୍ୟାନ୍ତ ଆବଶ୍ୟକତା ରହିଅଛି, ସେହିପରି ଶରୀରକୁ ନିରୋଗ ରଖିବା ପାଇଁ ଔଷଧର ମଧ୍ୟ ଆବଶ୍ୟକତା ସମ୍ପୂର୍ଣ୍ଣ ରୂପେ ରହିଅଛି । ତେଣୁ କେଉଁ ଚିରାଚରିତ କାଳରୁ ମନୁଷ୍ୟ ଏହି ଖାଦ୍ୟ, ବସ୍ତ୍ର, ବାସଗୃହ ଓ ଔଷଧ ନିମନ୍ତେ ତାର ଚତୁଃପାର୍ଶ୍ୱରେ ଥିବା ବୃକ୍ଷଲତା ଉପରେ ନିର୍ଭର କରି ଆସୁଅଛି ।

ସକାଳୁ ଶଯ୍ୟା ତ୍ୟାଗ କରିବାଠାରୁ ରାତ୍ରିରେ ନିଦ୍ରାଯିବା ସମୟରେ ମଧ୍ୟ ବୃକ୍ଷଲତାର ପ୍ରଭାବ ମନୁଷ୍ୟ ଉପଲବ୍ଧି କରିଥାଏ । ଯେ କୌଣସି ଦ୍ରବ୍ୟର ଚାହିଦା ପୂରଣ ପାଇଁ ଉଦ୍ଭିଦ ମନୁଷ୍ୟର ସାହାଯ୍ୟରେ ଆସିଥାଏ । ବୃକ୍ଷଲତା ଦ୍ୱାରା ପରିବେଶ ସୁରକ୍ଷିତ ହେବା ସଙ୍ଗେ ସଙ୍ଗେ ଆଜିର ସମୟରେ ଯଦି ମନୁଷ୍ୟ ଅନ୍ୟ ଉପରେ ନିର୍ଭର ନକରି, କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ନହେବା ପାଇଁ ପ୍ରତ୍ୟେକ ବୃକ୍ଷଲତାକୁ ଉତ୍ତମରୂପେ ଚିହ୍ନିବା ସହିତ ତାର ଔଷଧୀୟ ଗୁଣ ଓ ଉପଯୋଗୀତା ବିଷୟରେ ଜାଣିପାରେ, ତେବେ ନିଜର ତଥା ଅନ୍ୟର ସମସ୍ତ ପ୍ରକାର ଅଭାବ ଅସୁବିଧା ଦୂର କରିବାରେ ସକ୍ଷମ ହୋଇପାରିବ ।

ପୃଥିବୀର ଏହି ପ୍ରାକୃତିକ ପରିବେଶରେ ବଡ଼ ବଡ଼ ବୃକ୍ଷମାନଙ୍କଠାରୁ ଆରମ୍ଭ କରି ସମସ୍ତ ଛୋଟ ଛୋଟ ଗଛମାନଙ୍କରେ ଅଦ୍ଭୁତ ପ୍ରକାରର ଔଷଧିୟ ଗୁଣ ପୂରି ରହିଅଛି । ବୈଜ୍ଞାନିକ ପଦ୍ଧତିରେ ଯେଉଁସବୁ ରାସାୟନିକ ଔଷଧ ପ୍ରସ୍ତୁତ ହେଉଅଛି, ସେସବୁ ଏହି ବୃକ୍ଷଲତାରୁ ପ୍ରସ୍ତୁତ ହେଉଅଛି । ପାଠ ପଢ଼ିବା ଦ୍ୱାରା ଆମେ ଯେପରି ଖବର କାଗଜ ପଢ଼ି, ଦୂରଦର୍ଶନ ଦେଖି ଓ ରେଡ଼ିଓ ଶୁଣି ଦେଶ ବିଦେଶର ଖବର ଓ ଅନ୍ୟାନ୍ୟ ଅନେକ ପ୍ରକାରର ଆବଶ୍ୟକୀୟ ବିଷୟ ଓ ସମସ୍ୟା ସମ୍ବନ୍ଧରେ ଜାଣି ତତ୍ସହିତ ନିଜର ରହିଥିବା ଆବଶ୍ୟକତା ଓ ସମସ୍ୟାକୁ ତୁଳନା କରି ସେଗୁଡ଼ିକୁ ସୁସମାଧାନ କରିବା ନିମନ୍ତେ ଚେଷ୍ଟାକରି ପାରୁଛେ, ସେହିପରି ବୃକ୍ଷଲତାମାନଙ୍କ ବିଷୟରେ ଜାଣିବା ଦ୍ୱାରା ଆମେ ଆମର ନିତ୍ୟାନ୍ତ ଆବଶ୍ୟକୀୟ ଦ୍ରବ୍ୟଗୁଡ଼ିକର ଅଭାବ ପୂରଣ କରିବାରେ ସଫଳ ହୋଇ ପାରିବା । ପରିବାର ନିୟନ୍ତ୍ରଣ ପାଇଁ ଯେପରି ସମସ୍ତ ମନୁଷ୍ୟଙ୍କୁ ନିଜର ଉପଯୁକ୍ତ ବୁଝାମଣାର ସୂତ୍ରରୂପୀ ଔଷଧର ଆବଶ୍ୟକତା ରହିଛି, ତଦ୍‌ପରି ବୃକ୍ଷକୁ ଛେଦନ ନକରି ପରିଶ୍ରମକରି ବାଡ଼ିରେ ହାତ ବସାଇବା ପରି ପରିବାର ରୂପୀ ଔଷଧୀୟ ବଗିଚାର ସୃଷ୍ଟି ଓ ଉନ୍ନତି କରିବା ସଙ୍ଗେ ସଙ୍ଗେ ତାର ସଦୁପଯୋଗ କରିବା ନିତ୍ୟାନ୍ତ ଆବଶ୍ୟକ ।

ଆୟୁର୍ବେଦ ଶାସ୍ତ୍ରାନୁସାରେ ବୃକ୍ଷଲତାର ବିନୌଷଧି ଅତ୍ୟନ୍ତ ସୁଫଳପ୍ରଦ ଓ ତାହା ସହଜେ ଆମ୍ଭେମାନେ ସଂଗ୍ରହ କରିପାରିବା । ତେଣୁ ଆମେ ଅନେକ ଶାସ୍ତ୍ର ଓ ପୁସ୍ତିକାରୁ ସଂଗ୍ରହକରି କେତେକ ବିନୌଷଧିର ଚିହ୍ନିବା ଉପାୟ, ଗୁଣ ଓ ପ୍ରୟୋଗ ପ୍ରଣାଳୀ ଏହି **'ଆମଗଛ ଆମ ଔଷଧ'** ବହିଟିରେ ସ୍ଥାନ ଦେଇଅଛୁ । ଏହାଦ୍ୱାରା ଜନସାଧାରଣ ନିଶ୍ଚୟ ପ୍ରଭୂତ ଆଶୁ ଉପକାର ପାଇପାରିବ ଓ ଏହା ଔଷଧୀୟ ବୃକ୍ଷ ସପକ୍ଷରେ ଜନସଚେତନତା ସୃଷ୍ଟି କରିପାରିବ ଏହାହିଁ ଆମର ଦୃଢ଼ ବିଶ୍ୱାସ ।

*ସଂଗ୍ରାହକ*

## ଔଷଧ ବୃକ୍ଷ ଗ୍ରହଣ ନୀତି

ସ୍ନାନାନ୍ତରେ ଶୁଭାହେ ଚ ସୁଚିତ୍ତେ ପୂର୍ବମାନନେ
ଭୈଷଜ୍ୟଗ୍ରହଣଂ କୃତ୍ୱା ତସ୍ୟାଧିକ-ଫଳପ୍ରଦାଃ ।

ଅର୍ଥ- କୌଣସି ଶୁଭଦିନରେ ସ୍ନାନ ସାରି ଆନନ୍ଦ ମନରେ ପୂର୍ବାଭିମୁଖ ହୋଇ ଔଷଧ ବୃକ୍ଷ ସଂଗ୍ରହ କଲେ ତାହା ଅଧିକ ଫଳପ୍ରଦ ହୁଏ ।

## ଔଷଧ ବୃକ୍ଷ ବର୍ଜନ ବିଧି

ବଲ୍ମୀକ କୁତ୍ସିତାନୁପ ଶ୍ମଶାନୋଷରମାର୍ଗଜାଃ
ଜନ୍ତୁବହ୍ନି ହିମବ୍ୟାପ୍ତା ନୌଷଧ କାର୍ଯ୍ୟସାଧିକାଃ ।

ଅର୍ଥ- ବଲ୍ମୀକ (ଉଇହୁଙ୍କା), ଅପବିତ୍ର ସ୍ଥାନ, ଜଳମୟ ଭୂମି, ଶ୍ମଶାନ, କ୍ଷାରଯୁକ୍ତ ଭୂମି ଓ ପଥ ମଧ୍ୟରେ ଜାତ ହୋଇଥିବା ଔଷଧ ବୃକ୍ଷ ଏବଂ କୀଟାଦି ଜନ୍ତୁ ଉଚ୍ଛିଷ୍ଟ, ଅଗ୍ନିରେ ପୋଡ଼ି ଯାଇଥିବା ଓ ଶିଶିରରେ ବ୍ୟାପ୍ତ ରହିଥିବା ଔଷଧ ବୃକ୍ଷଦ୍ୱାରା ଉପକାର ନହୋଇ ଅପକାର ହୋଇଥାଏ । ତେଣୁ ସେ ସବୁ ପରିତ୍ୟାଗ କରିବା ଉଚିତ୍ ।

## ଗ୍ରନ୍ଥାନ୍ତରେ

ଦେବତାଳୟ ବଲ୍ମୀକ କୂପ ପଥ୍ୟାଃ ଶ୍ମଶାନଜାଃ
ଅକାଳ ତରୁମ୍ଳୋତ୍ଥା ନ୍ୟନାଧିକ ଚିରନ୍ତନାଃ,
ଜଳାଗ୍ନି କୃମି ସଂକ୍ଷୁର୍ଣ୍ଣା ଔଷଧସ୍ତୁ ନ ସିଦ୍ଧିଦାଃ
ବର୍ଜିତଂ ତସ୍ୟ ଶାଘ୍ରେଶ କଥିତଂ ମୁନିପୁଙ୍ଗବୈଃ ।

ଅର୍ଥ- ଦେବତା ମନ୍ଦିର, ଉଇହୁଙ୍କା, କୂପ, ପଥ, ଶ୍ମଶାନ ଓ ଅନ୍ୟ କୌଣସି ବୃକ୍ଷ ମୂଳରେ ଉତ୍ପନ୍ନ ହେଉଥିବା, କିମ୍ବା ଅସମୟୋତ୍ପନ୍ନ, ଅତିଦୀର୍ଘ, ଅତିନ୍ୟୁନ, ଅତି ପୁରାତନ, ଜଳମଧ୍ୟୋତ୍ପନ୍ନ ବା ଦୂଷିତ, ବହ୍ନି ଦଗ୍ଧ ଓ କୀଟଦ୍ରଷ୍ଟ ପ୍ରଭୃତି ଔଷଧକୁ ତ୍ୟାଗ କରିବା ଉଚିତ ବୋଲି ମୁନିଋଷିମାନେ କହିଛନ୍ତି ।

## ବୃକ୍ଷର ପଞ୍ଚାଙ୍ଗ ଗ୍ରହଣ ନିୟମ

ପତ୍ର, ପୁଷ୍ପ, ଫଳଂ ଚୈବ ବଳକଳଂ ମୂଳମିଶ୍ରିତମ୍
ପଞ୍ଚାଙ୍ଗଂ ନାମଧେୟଂ ଚ ସର୍ବାଂଶ କ୍ଷୁଦ୍ର ବୃକ୍ଷକୈଃ ।

ଅର୍ଥ- ବୃକ୍ଷର ପତ୍ର, ପୁଷ୍ପ, ଫଳ, ବକଳ (ଛେଲି) ଓ ମୂଳ ଏହି ପାଞ୍ଚ ଦ୍ରବ୍ୟକୁ ଗ୍ରହଣ ପୂର୍ବକ ଏକାଠି ମିଶାଇଲେ ପଞ୍ଚାଙ୍ଗ କୁହାଯାଏ । ଗୁଳ୍ମ, ଲତା ପ୍ରଭୃତି କୌଣସି କ୍ଷୁଦ୍ରବୃକ୍ଷ ହୋଇଥିଲେ, ସେହିଗଛର ସମସ୍ତ ଅଂଶକୁ ଗ୍ରହଣ କରିବା ମଧ୍ୟ ପଞ୍ଚାଙ୍ଗ ନାମରେ କଥିତ ।

## ବୃକ୍ଷରୁ ଔଷଧ ଗ୍ରହଣ ପ୍ରଣାଳୀ

ସ୍ୱରସଂ କଲକକ୍ୱାଥଂ ଚ ତ୍ରୟଭାଗେ ବିଶେଷକୈଃ
ସେବନଂ ଶ୍ରେପଯୋଗୀ ସ୍ୟାତ୍ ଯଥାଯଥ ବିଗ୍ରହକୃତ୍ ।

ଅର୍ଥ- ନାନା ଭାବରେ ଔଷଧମାନଙ୍କୁ ସେବନ କରାଯାଏ, କିନ୍ତୁ ସେଥିମଧ୍ୟରୁ ସ୍ୱରସ,

କଲ୍କ ଓ କ୍ୱାଥ ତିନୋଟି ଅଧିକାଂଶ ସ୍ଥଳରେ ବ୍ୟବହୃତ ହେଉଥିବା ଯୋଗୁଁ କେବଳ ସେହି ତିନୋଟିର ବ୍ୟବହାର ବିଧି ଏଠାରେ ବର୍ଣ୍ଣିତ ।

### ସ୍ୱରସ

ସଦ୍ୟଃ କ୍ଷୁର୍ଣ୍ଣାଦ୍ର ଦ୍ରବ୍ୟସ୍ୟ ବସ୍ତ୍ର ଯନ୍ତ୍ରାଦି ପୀଡ଼ନାତ୍
ଯୋ ରସସ୍ତ୍ର ଭିନିର୍ଯ୍ୟାତି ସ୍ୱରସଃ ସ ପ୍ରକୀର୍ତ୍ତିତଃ ।

ଅର୍ଥ :– ସଦ୍ୟ ଗୃହିତ କଞ୍ଚା ଦ୍ରବ୍ୟକୁ କୁଟି ବା ଛେଚି ଚିପୁଡ଼ି ଛାଣିନେଲେ ତହିଁରୁ ଯେଉଁ ରସ ବାହାର ହୁଏ, ତାହାକୁ ସ୍ୱରସ କୁହାଯାଏ ।

### କଲ୍କ

ଦ୍ରବ୍ୟମାର୍ଦ୍ରଂ ଶିଳାପିଷ୍ଟଂ ଶୁଷ୍କଂ ବା ଜଳମିଶ୍ରିତମ୍
ତଦେବ ସୁରଭିଃ ପୂର୍ବୈଃ କଲ୍କମିତ୍ୟଭିଧୀୟତେ ।

ଅର୍ଥ :– କଞ୍ଚା ବା ଶୁଖିଲା ଯାହାହେଉ ଜଳ ସଙ୍ଗରେ ଉତ୍ତମରୂପେ ପେଷଣ କଲେ ତାକୁ କଲ୍କ ବୋଲାଯାଏ ।

### କ୍ୱାଥ

ଔଷଧୀନାଂ ସଲିଳେତୁ ସିଦ୍ଧେନ କ୍ୱାଥମାପ୍ନୁୟାତ
ଯଥାସ୍ଥାନେ ପ୍ରୟୋଗଂ ଚ ଯଥାଯଥ ଫଳପ୍ରଦମ୍ ।

ଅର୍ଥ :– ବନୌଷଧିକୁ କେବଳ ଜଳ ସଙ୍ଗରେ ଉତ୍ତମ ରୂପେ ସିଝାଇ ନେଲେ ସେହି ଜଳକୁ କ୍ୱାଥ କୁହାଯାଏ । ଏହି କ୍ୱାଥ ଯଥାସ୍ଥାନରେ ପ୍ରଯୁକ୍ତ ହେଲେ ଫଳଦାୟକ ହୋଇଥାଏ ।

# ଔଷଧୀୟ ବୃକ୍ଷଲତାର ନାମ ଓ ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

## ଅଁଳା

ଅଁଳାକୁ ଡାକ୍ତରୀରେ ଏମ୍ବଲିକା ଓଫିସିନେଲିସ ଏବଂ ସଂସ୍କୃତରେ ଆମଳକ, ଅମଳକୀ, ଧାତ୍ରୀ, ତିଷ୍ୟଫଳା ଓ ଅମୃତା ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଅଁଳା କଷାୟ–ଅମ୍ଳ–ମଧୁରରସ, ଶୀତବୀର୍ଯ୍ୟ, ଲଘୁ, ରସାୟନ, ମସ୍ତିଷ୍କଶୀତଳକାରକ ଓ କେଶବର୍ଦ୍ଧକ ଏବଂ ବାୟୁ, ପିତ୍ତ, କଫ, ଅମ୍ଳପିତ୍ତ, ଦାହ, ତୃଷା, ମେହ, ବମନ ଓ ଅଜୀର୍ଣ୍ଣ ପ୍ରଭୃତି ରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

କ) ଅଁଳାପତ୍ର ରସ ସଙ୍ଗରେ ଖସା ତେଲ ମିଶାଇ ମସ୍ତକରେ ମାଲିସ କଲେ ମୁଣ୍ଡବ୍ୟଥା, ମୁଣ୍ଡଭ୍ରମ ଓ ମୁଣ୍ଡ ଗରମ ପ୍ରଭୃତି ଭଲହୁଏ ।

ଖ) ଅଁଳା ଫଳକୁ ପ୍ରତ୍ୟହ ସେବାଇକରି କିଛିଦିନ ଖାଇଲେ ମେହ, ପ୍ରମେହ, ଶୁକ୍ରଦୋଷ ଓ ଧାତୁକ୍ଷୟ ଆଦି ରୋଗ ଶୀଘ୍ର ଭଲ ହୁଏ ।

ଗ) ଅଁଳା ଫଳ ରସ ସଙ୍ଗରେ ଅଳ୍ପ ମହୁ ମିଶାଇ ୭/୮ ଦିନ ଦୁଇତୋଳା କରି ସେବନ କଲେ ସବୁପ୍ରକାର ପେଟ ବେଦନା ଓ ରକ୍ତବିକୃତି ଭଲ ହୁଏ ।

ଘ) ଅଁଳା ରସ ସଙ୍ଗେ ହଳଦୀଗୁଣ୍ଡା ମିଶାଇ ତିନିଥର ସେବନ କଲେ ସମସ୍ତ ପ୍ରକାର ମେହ ରୋଗ ଭଲ ହୁଏ ।

## ଅକାନବିନ୍ଦି

ଅକାନବିନ୍ଦିକୁ ଡାକ୍ତରୀରେ ଷ୍ଟିପେନିଆ ହାରଣ୍ୟାଣ୍ଡି ଫୋଲିର ଏବଂ ସଂସ୍କୃତରେ ପ୍ରାଚୀନ, ଅମ୍ବଷ୍ଠ, ଅମ୍ବଷ୍ଠିକା, ସ୍ଥାପନୀ, ପ୍ରେୟାସୀ, ବିଦ୍ଧକଣ୍ଠିକା, ଏକାଷ୍ଠିଳା, ତିକ୍ତପୁଷ୍ପା, ବନତିକ୍ତତା, ଦୀପନୀ, କୁଚେଲୀ, ବୃହତିକା, ବରା, ଶିଶିରା, ବୃକୀ, ଦେବୀ, ବୃତ୍ତପର୍ଣ୍ଣୀ, ତିକ୍ତା, ଆକୋଶିକା, ବୃକା, ଅମ୍ବଷ୍ଠକୀ, ବନତିକ୍ତା, ବାସା, ବିଦ୍ଧକର୍ଣ୍ଣୀ, ପାପଚେଲୀ, ଅବିଦ୍ଧକର୍ଣ୍ଣୀ, ପାଟିକା, ଆବଦ୍ଧକର୍ଣ୍ଣା, କୁଚେଲା ଓ ଛିନ୍ନବେଶିକା ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଅକାନବିନ୍ଦି ତିକ୍ତରସ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ, ରୁଚିକାରକ ଓ ଭଗ୍ନସ୍ଥାନ ସଂଯୋଜକ ଏବଂ ବାୟୁ, ହୃଦ୍ରୋଗ, କଫ, କର୍ଣ୍ଣରୋଗ, କୁଷ୍ଠ, କଣ୍ଡୁ, ଜ୍ୱର, ପିତ୍ତ, ଶର୍ଦ୍ଦି, ତ୍ରିଦୋଷ, ଦାହ, ଅତିସାର ଓ ଶୂଳରୋଗ ବିନାଶକ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

କ) ଅକାନବିନ୍ଦି ମୂଳକୁ ବାସିପାଣିରେ ବାଟି ପିଇଲେ ଉହାଜ୍ୱର ଛାଡ଼ିଯାଏ ।

ଖ) କୌଣସି ଘାଆରୁ ପୂଯ ଯାଉ ନ ଥିଲେ ଅକାନବିନ୍ଦି ପତ୍ରଟିଏ ଆଣି ମଝିରେ ଟିକିଏ କଣା କରି ପତ୍ରରେ ଉଷୁମ ଘିଅ ମାରି ସେହି ଘାଆ ଉପରେ ଲଗାଇଦେଲେ ପତ୍ରର ଛିଦ୍ରବାଟେ ସବୁ ପୂଯ ସହଜରେ ନିର୍ଗତ ହୋଇଯାଏ ।

ଗ) ଅକାନବିନ୍ଦିପତ୍ରର ରସ ସଙ୍ଗରେ ଅଳ୍ପ ସୈନ୍ଧବ ଲୁଣ ମିଶାଇ କାନରେ ପକାଇଲେ ସକଳ ପ୍ରକାର କର୍ଣ୍ଣରୋଗ ନିବାରିତ ହୁଏ ।

ଘ) ଅକାନବିନ୍ଦିପତ୍ର, ଲତା ଓ ମୂଳ ଏ ତିନି ପଦାର୍ଥକୁ ଆଣି ଖରାରେ ଶୁଖାଇ ଦର କୁଟିଲା କରି ଜଳରେ ସିଝାଇ ଅଷ୍ଟାବଶେଷ ଜଳ ରଖି ଓହ୍ଲାଇ ସେହି ଜଳକୁ ଛାଣି ସେଥିରେ ଅଳ୍ପ ମହୁ ପରାକ୍ଷା ଦେଇ ତିନିପାନ ସେବନ କଲେ ଜ୍ୱର, ପିତ୍ତ, ବାୟୁ, କଫ, ହୃଦ୍ରୋଗ, ଦାହ ଓ ତୃଷା ଆଦି ଶୀଘ୍ର ନିବାରିତ ହୁଏ ।

ଙ) ଅକାନବିନ୍ଦିପତ୍ର ରସ ସଙ୍ଗରେ ଶୁଣ୍ଠୀଚୂର୍ଣ୍ଣ ମିଶାଇ ସେବନ କଲେ ଆମଦୋଷ ବିନାଶ ହୁଏ ।

# ଅଗସ୍ତି

ଅଗସ୍ତି ଗଛକୁ ଡାକ୍ତରୀରେ ସେସ୍‌ବାନା ଗ୍ରାଣ୍ଡି ଫୋଲିଆ ଏବଂ ସଂସ୍କୃତ ଭାଷାରେ ବଙ୍ଗସେନ, ମୁନିପୁଷ୍ପା, ମୁନିଦ୍ରୁମ ଓ ଅଗ୍ରସ୍ତ୍ୟ ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

ଅଗସ୍ତି ତିକ୍ତ, କଷାୟ, କଟୁ ଓ ମଧୁର ଆସ୍ୱାଦ, ମଦଗନ୍ଧ, ଅଧିକ ଶୀତଳ ଅଗ୍ନିବର୍ଦ୍ଧକ ଏବଂ ପିତ୍ତ, କଫ, ଶ୍ୱାସ, ଦାହ, ତୃଷା, କୋଷ୍ଠ, ଯୋନିଶୂଳ ରାତ୍ର୍ୟନ୍ଧତା, ପୀନସ, ଶୋଥ, ପାଣ୍ଡୁ ଓ ଚତୁର୍ଥିକ ଜ୍ୱର ପ୍ରଭୃତି ବିନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

କ) ଅଗସ୍ତି ପତ୍ରର ରସକୁ ଆଣି ରାଶିତେଲ ସଙ୍ଗରେ ତୈଳରାନ୍ଧି ସର୍ବାଙ୍ଗରେ ମାଲିସ କଲେ ଦେହରୁ ଚର୍ମଉକୁଣା, କଣ୍ଡୁ, ଦଦ୍ରୁ, ବ୍ରଣ, ବିଚର୍ଚ୍ଚିକା ଓ କୁଷ୍ଠପୀଡ଼ା ପ୍ରଭୃତି ଅଳ୍ପଦିନ ମଧ୍ୟରେ ବିନାଶ ହୁଏ ।

ଖ) ଅଗସ୍ତିପତ୍ର ରସ ସଙ୍ଗରେ ଘିଅକୁଆଁରୀ ରସ ମିଶାଇ ମୁଣ୍ଡରେ ମାଲିସ କଲେ ମୁଣ୍ଡରୁ ସମସ୍ତ ଉକୁଣୀ ବିନାଶ ହୁଅନ୍ତି ଏବଂ ବାତ ପିତ୍ତ ଶାନ୍ତି ହୁଏ ଓ ମସ୍ତିଷ୍କ ଶୀତଳ ରହେ ।

ଗ) ଅଗସ୍ତି ମୂଳର ଛେଲି ଓ ଅଶୋକ ଛେଲି ଏ ଦୁହିଙ୍କି ଏକତ୍ର ଜଳରେ ସିଝାଇ ପାନ କଲେ ସ୍ତ୍ରୀମାନଙ୍କର ପ୍ରଦରରୋଗ, ପୁରୁଷମାନଙ୍କର ମେହ, ପମେହ, ଶୋଥ, ଜ୍ୱର ଓ ତୃଷ୍ଣାରୋଗ ଆଦି ବିନାଶ ହୁଏ ।

ଘ) ଅଗସ୍ତିପତ୍ର ରସ ସଙ୍ଗରେ ଯାଷ୍ଟିମଧୁ ଚୂର୍ଣ୍ଣ ମିଶାଇ ଚଉଦପାନ ସେବନ କଲେ ରକ୍ତପିତ୍ତ ରୋଗ, ସବୁପ୍ରକାର ଚକ୍ଷୁପୀଡ଼ା, କଫ ଓ ଶ୍ୱାସ ପ୍ରଭୃତି ରୋଗ ଶୀଘ୍ର ପ୍ରଶମିତ ହୁଏ ।

# ଅପାମାର୍ଗ

ଅପାମାର୍ଗକୁ ଉତ୍କଳରେ ଅପାମାରଙ୍ଗ, ଡାକ୍ତରୀରେ ଆଚିର୍‌ୟାଛିସ୍ ଅସ୍‌ପେରା ଏବଂ ସଂସ୍କୃତରେ ଅପାମାର୍ଗ, ଶିଖରୀ, ଅଧଃଶଲ୍ୟ, ମର୍କଟୀ, ଦୁର୍ଗ୍ରହା, କିଣିହୀ ଓ ଖରମଞ୍ଜରୀ ପ୍ରଭୃତି କହନ୍ତି ।

ଏହା ତିନି ପ୍ରକାର – ରକ୍ତ ଅପାମାର୍ଗ, ଶ୍ୱେତ ଅପାମାର୍ଗ ଓ କୃଷ୍ଣ ଅପାମାର୍ଗ ।

## ଆୟୁର୍ବେଦୋକ୍ତ ଗୁଣ

ଅପାମାର୍ଗ କଟୁତିକ୍ତ ରସ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ, ମଳରୋଧକ, ଅଗ୍ନିବର୍ଦ୍ଧକ, ପାଚକ. ରୁଚିକାରକ ଏବଂ କଫ, ଅର୍ଶ, କଣ୍ଡୁ, ରକ୍ତସ୍ରାବ, ମେଦଦୋଷ, ଆମଦୋଷ, ହୃଦ୍ରୋଗ, ଉଦରାଧ୍ମାନ ପ୍ରଭୃତି ରୋଗ ବିନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

କ) ଅପାମାର୍ଗ ପତ୍ରର ରସ ସଙ୍ଗେ ଗୋଲମରିଚ ଗୁଣ୍ଡ ମିଶାଇ ତିନିପାନ ସେବନ କଲେ ଯାବତୀୟ ଜ୍ୱର ଭଲ ହୁଏ ।

ଖ) ଅପାମାର୍ଗ ମୂଳକୁ ଜଳରେ ସିଝାଇ ସେହି କ୍ୱାଥ ସଙ୍ଗେ ମହୁ ମିଶାଇ ପିଆଇଲେ ଶୀଘ୍ର ପ୍ରସବ ହୁଏ ।

ଗ) ଅପାମାର୍ଗ ପତ୍ର ରସକୁ ପ୍ରତ୍ୟହ ଦାନ୍ତରେ ଘଷିଲେ ଦାନ୍ତ ବଜ୍ର ପରି କଠିନ ରହେ ଏବଂ ଅସମୟରେ ଦାନ୍ତ ହଲିବା, ଦାନ୍ତ ପୋକ କାଟିବା, ଦନ୍ତସରସା, ଦନ୍ତାର୍ଶ ପ୍ରଭୃତି ସବୁପ୍ରକାର ଦନ୍ତରୋଗ ଆରୋଗ୍ୟ ହୁଏ ।

ଘ) ଅପାମାର୍ଗ ଗଛକୁ ନିଆଁରେ ପୋଡ଼ି ସେହି ପାଉଁଶରୁ ଦୁଇରତି ନେଇ କିଞ୍ଚିତ୍ ମହୁ ସଙ୍ଗେ ମିଶାଇ ପିଲାମାନଙ୍କୁ ସେବନ କରାଇଲେ ସେମାନଙ୍କର ସବୁପ୍ରକାର କଫ, କାସ ଓ ଶ୍ୱାସ ରୋଗ ଭଲ ହୁଏ । ବୟସ୍କମାନଙ୍କୁ ଚାରିରତି ଦେବା ଦରକାର ।

ଙ) ଦେହର କୌଣସି ସ୍ଥାନ କଟିଗଲେ, ସଙ୍ଗେ ସଙ୍ଗେ କେତେଗୁଡ଼ିଏ ଅପାମାର୍ଗ ପତ୍ରକୁ ବାଟି ସେହି ସ୍ଥାନରେ ବୋଳିଦେଇ ତା ଉପରେ ଖଣ୍ଡେ କନାପଟି ବାନ୍ଧିଦେଲେ ସେହିଦିନ ମଧ୍ୟରେ ସେ ସ୍ଥାନଟି ଭଲ ହୋଇଯାଏ ।

ଚ) ଅପାମାର୍ଗ ଗଛକୁ ଉପାଡ଼ି ଆଣି ପ୍ରତ୍ୟହ ଦାନ୍ତକାଠି କରି ଦାନ୍ତ ଘଷିଲେ କୌଣସି ପ୍ରକାର ଦନ୍ତରୋଗ ଓ ମୁଖରୋଗ ହୁଏ ନାହିଁ । ପୂର୍ବରୁ ଥିଲେ ମଧ୍ୟ ଭଲ ହୋଇଯାଏ ।

ଛ) ଅପାମାର୍ଗ ପତ୍ରକୁ ଶୁଖାଇ ପିକା ବଳି ଧୂମ ଗ୍ରହଣ କଲେ ଅସାଧ୍ୟ ଶ୍ୱାସ, କାସ ଓ ଧଇଁ ପ୍ରଭୃତି ରୋଗ ଭଲ ହୁଏ ।

# ଅରଖ

ଅରଖଗଛକୁ ଡାକ୍ତରୀରେ କାଲୋଟ୍ରେପିସ ଜାଇଗେଣ୍ଟିଆ ଏବଂ ସଂସ୍କୃତରେ ରକ୍ତଅରଖକୁ ଅର୍କପର୍ଣ୍ଣ, ରକ୍ତାର୍କ, ରକ୍ତପୁଷ୍ପ, ଶୁକ୍ଳଫଳ, ଆସ୍ଫୋତ ଓ ବିକୀରଣ ଏବଂ ଶୁକ୍ଳ ଅରଖକୁ ଶ୍ୱେତାର୍କ, ଗଣରୂପ, ମନ୍ଦାର, ବସୁକ, ଶ୍ୱେତପୁଷ୍ପା, ସଦାପୁଷ୍ପା, ଅଲର୍କ ଓ ପ୍ରତାପ ପ୍ରଭୃତି କୁହାଯାଏ ।

ଅରଖ ଦୁଇ ପ୍ରକାର । ଶ୍ୱେତ ଅରଖ ଓ ରକ୍ତ ଅରଖ । ଶ୍ୱେତ ଅରଖକୁ ଶ୍ୱେତଆକନ୍ଦ ଓ ସାଧାରଣ ଅରଖଗଛକୁ ରକ୍ତଅରଖ ବା ରକ୍ତଆକନ୍ଦ ବୋଲି କହନ୍ତି । ଏହି ଦୁଇପ୍ରକାର ଅରଖ ମଧ୍ୟରୁ ଶ୍ୱେତ ଅରଖର ଗୁଣ ବେଶୀ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

କ) ଶ୍ୱେତଅରଖ ଗଛମୂଳର ଛେଲିକୁ ଆଣି କାଞ୍ଜିପାଣି ସଙ୍ଗରେ ବାଟି ଲେପନ କଲେ କୋଷବୃଦ୍ଧିର ଉପଶମ ହୁଏ ।

ଖ) ଶ୍ୱେତ ବା ରକ୍ତ ଅରଖ ପତ୍ର ରସ ଗ୍ରିରି ପାଞ୍ଚ ବୁନ୍ଦା ସଙ୍ଗରେ ସମପରିମାଣରେ ମହୁ ମିଶ୍ରିତ କରି ସେବନ କଲେ ବହୁତ ଦିନର ଜ୍ୱର ଓ ପ୍ଳୀହା ପ୍ରଭୃତି ଉଦର ବ୍ୟାଧିମାନ ଅତି ଅଳ୍ପଦିନ ମଧ୍ୟରେ ଭଲ ହୁଏ ।

ଗ) ଅରଖ ଗଛର କ୍ଷୀର ୨/୩ ବୁନ୍ଦା ପ୍ରମାଣ ଆଣି ଚିନି ସଙ୍ଗରେ ସେବନ କଲେ ଝାଡ଼ା ପରିଷ୍କାର ହୋଇ ମଳରୁଦ୍ଧରୋଗ, ବାୟୁ, ଗୁଳ୍ମ ଓ ପ୍ଳୀହା ପ୍ରଭୃତି ଉଦର ରୋଗ ଭଲ ହୁଏ ।

# ଅଶ୍ୱତ୍ଥ

ଅଶ୍ୱତ୍ଥ ଗଛକୁ ସମଗ୍ର ପୃଥିବୀରେ ପ୍ରାୟ ସମସ୍ତେ ଚିହ୍ନନ୍ତି । ଏହାକୁ ଡାକ୍ତରୀ ବିଦ୍ୟାରେ ଫକସ୍‌ରିଲଜିଓସମ ଏବଂ ସଂସ୍କୃତରେ ବୋଧିଦ୍ରୁମ, ପିପ୍‌ପଳ, ଅଶ୍ୱତ୍ଥ, ଚଳପତ୍ର ଓ ଗଜାସମ ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ଅଶ୍ୱତ୍ଥ ଗୁରୁ, କଷାୟରସ, ରୁକ୍ଷ, ଦୁଷ୍ପାଚ୍ୟ, ଶୀତବୀର୍ଯ୍ୟ, ପିତ୍ତଘ୍ନ ଓ ବର୍ଣ୍ଣ ବିବର୍ଦ୍ଧକ ଏବଂ ବ୍ରଣ, କଫ, ରକ୍ତଦୋଷ ଓ ଯୋନିରୋଗ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

କ) ଅଶ୍ୱତ୍ଥ ଛେଲିକୁ ଜଳ ସଙ୍ଗେ ସିଝାଇ ସେହି ଜଳଦ୍ୱାରା ରକ୍ତଗଡ଼ିବା ସ୍ଥାନକୁ ବାରମ୍ବାର ଧୋଇଦେଲେ ରକ୍ତଗଡ଼ିବା ଶୀଘ୍ର ଆରୋଗ୍ୟ ହୁଏ ।

ଖ) ଅଶ୍ୱତ୍‌ଥ ଛେଲିକୁ ଜଳସଙ୍ଗେ ସିଝାଇ ସେହି ଜଳରେ ଉପଦଂଶ ବା ଗରମୀ ଘାଆକୁ ଧୋଇଲେ ୨/୩ ଦିନ ମଧ୍ୟରେ ତାହା ଭଲ ହୋଇଯାଏ ।

## ଅଶୋକ

ଅଶୋକ ଗଛକୁ ଡାକ୍ତରୀରେ ସାରାକାଇଣ୍ଡିଆ ଏବଂ ସଂସ୍କୃତରେ ଗନ୍ଧପୁଷ୍ପ ନଟ, ପିଣ୍ଡୀପୁଷ୍ପ, କଙ୍କେଳି, ଅଶୋକ, ହେମପୁଷ୍ପ, ବଞ୍ଜୁଳ ଓ ତାମ୍ରବଲ୍ଲଭ କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ଅଶୋକ ତିକ୍ତ କଷାୟ ରସ, ଶୀତବୀର୍ଯ୍ୟ, ମଳରୋଧକ ଏବଂ ଶୂଳ, ଗୁଳ୍ମ, ଉଦରାଧ୍ମାନ, କୃମି, ଅପଚି, ପିପାସା, ଦାହ, ଶୋଥ, ବିଷଦୋଷ ଓ ପ୍ରଦର ରୋଗ ବିନାଶକ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଏକ ସେର ଜଳ ସଙ୍ଗରେ ଏକପାଆ ଗବ୍ୟଦୁଗ୍ଧ ମିଶାଇ ତହିଁରେ ଏକ ଛଟାଙ୍କି ପ୍ରମାଣରେ ଅଶୋକ ଛେଲି ସିଝାଇ ଅବଶିଷ୍ଟାଂଶ ଚତୁର୍ଥାଂଶ ରଖିବ । ସେହି ଅବଶିଷ୍ଟ ସିଦ୍ଧଦ୍ରବ୍ୟକୁ ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କରାଇଲେ ସ୍ତ୍ରୀମାନଙ୍କର ସବୁ ପ୍ରକାର ପ୍ରଦର ରୋଗ ନିବାରିତ ହୁଏ ।

(ଖ) ଆଶୋକ ଛେଲିକୁ ଜଳରେ ସିଝାଇ ସେହି କ୍ୱାଥ ସଙ୍ଗରେ ଅଳ୍ପ ଗବ୍ୟଦୁଗ୍ଧ ମିଶାଇ ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରଭାତ କାଳରେ ସେବନ କଲେ ସବୁ ପ୍ରକାର ପ୍ରଦର ରୋଗ ନିବାରିତ ହୁଏ ।

(ଗ) ଅଶୋକ ଛେଲି, ମେଥି ଓ ଶତାବରୀ ଏହି ତିନି ଦ୍ରବ୍ୟକୁ ଜଳରେ ବାଟି ସାତପାନ ସେବନ କଲେ ସ୍ତ୍ରୀମାନଙ୍କର ସମସ୍ତ ପ୍ରକାର ରୋଗ ଭଲ ହୁଏ ।

(ଘ) ଅଶୋକ ଗଛର ମୂଳକୁ ଆଣି ଜଳରେ ସିଝାଇ ସେହି କ୍ୱାଥ ସଙ୍ଗରେ ଅଳ୍ପ ମହୁ ମିଶାଇ ତିନିପାନ କିମ୍ବା ସାତପାନ ସେବନ କଲେ ଯାବତୀୟ ଋତୁବେଦନା ଦୂର ହୁଏ ।

(ଙ) ଅଶୋକ ଛେଲିକୁ ଛେଚି ତହିଁରୁ ରସ ବାହାର କରି ସେହି ରସ ସଙ୍ଗରେ କାଗଜୀ ଲେମ୍ବୁରସ ମିଶାଇ ତହିଁରେ ଅଳ୍ପ ସୈନ୍ଧବ ଲୁଣର ଗୁଣ୍ଡା ପ୍ରକ୍ଷେପ ଦେଇ ସେବନ କଲେ ବାୟୁଦୋଷ, ପେଟ ଫମ୍ପା ଓ ଅଜୀର୍ଣ୍ଣ ପ୍ରଭୃତି ରୋଗ ବିନାଶ ପାଏ ।

(ଚ) ଅଶୋକ ଛେଲି ରସ ସଙ୍ଗରେ ଅଳ୍ପ କଲିଚୂନ ପରାକ୍ଷା ଦେଇ ତିନିପାନ ସେବନ କଲେ ଉଦରର କୃମିମାନେ ବିନାଶ ପାଆନ୍ତି ।

# କପିତ୍ଥ

କପିତ୍ଥକୁ ଉତ୍କଳରେ କଇଁଥ, ଡାକ୍ତରୀରେ ଫେନୋରିଆ ଏଲିଫାଣ୍ଟିନମ୍ ଏବଂ ସଂସ୍କୃତରେ କପିତ୍ଥ, ଦଧିତ୍ଥ, ପୁଷ୍ପଫଳ, କପିପ୍ରିୟ, ଦଧିଫଳ ଓ ଦନ୍ତଶଠ ପ୍ରଭୃତି କୁହାଯାଏ । ପ୍ରାୟ ସମସ୍ତେ ଏହାକୁ ଜାଣନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

କଞ୍ଚାକଇଥ ଅମ୍ଳକଷାୟରସ, ଉଷ୍ଣବୀର୍ଯ୍ୟ, ଜିହ୍ୱାର ଜଡ଼ତାକାରକ, ମଳ ସଂଗ୍ରାହକ, ବିଷଦୋଷ ନାଶକ, ତ୍ରିଦୋଷବର୍ଦ୍ଧକ ଓ ଲଘୁପାକ ।

ପାଚିଲା କଇଥ ଅମ୍ଳମଧୁରରସ, ରୁକ୍ଷ, ଶୀତଳ, ଧାରକ, ଗୁରୁପାକ, ପିତ୍ତ, ହିକ୍କା, ପିପାସା, ବ୍ରଣ, କାସ, ଶ୍ୱାସ, ହୃଦ୍ରୋଗ, ବମନ, ଶାନ୍ତି, କ୍ଲାନ୍ତି ଓ ବିଷଦୋଷ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଗୋଟିଏ କଞ୍ଚା କଇଥକୁ ଆଣି ଭାଙ୍ଗି ତାହା ଭିତରେ ଥିବା ରସ ସଙ୍ଗେ ସାତ ଆଠଗୋଟି ଗୋଲମରିଚ ମିଶାଇ ଜଳରେ ବାଟି ତାହାକୁ ତିନିପାନ କରି ସେବନ କଲେ ଅଗ୍ନିମାନ୍ଦ୍ୟ, ଅତିସାର ଓ ଗ୍ରହଣୀ ଶୀଘ୍ର ଭଲହୁଏ ।

(ଖ) କଇଥ ପତ୍ରକୁ ଛେଚି ରସ ବାହାର କରି ଅଳ୍ପ ମହୁ ମିଶାଇ ସାତପାନ ସେବନ କଲେ ରକ୍ତବିକୃତି; ଦେହରେ ଚକା ଚକା ଦାଗ, ଗରମୀ ଘାଆ, ଉପଦଂଶ ଓ ଯାବତୀୟ ବିଷଦୋଷ ବିନାଶ ପାଏ ।

(ଗ) କଇଥ ମଞ୍ଜିକୁ ଜଳରେ ବାଟି ଲେପ ଦେଲେ ମୂଷା କାମୁଡ଼ିବା ଭଲ ହୁଏ ।

(ଘ) କଇଥ ମଞ୍ଜିର ତୈଳକୁ ଦେହରେ ମାଲିସ କଲେ ସବୁପ୍ରକାର ଚର୍ମରୋଗ ଭଲ ହୁଏ ।

(ଙ) କଇଥ ପତ୍ର ରସକୁ ତିନିପାନ ପିଆଇଲେ ବାନ୍ତି, ହିକ୍କା, ଶୋଷ, ବାୟୁ, ପିତ୍ତ, କାସ ଓ ଶ୍ୱାସ ରୋଗ ଭଲ ହୁଏ ।

(ଚ) କଇଥପତ୍ର ରସରେ ଅଳ୍ପ ସୈନ୍ଧବ ଲୁଣ ପରୀକ୍ଷ ଦେଇ ପିଆଇଲେ କୃମିରୋଗ ଭଲ ହୁଏ ।

# କରଞ୍ଜ

କରଞ୍ଜକୁ ଡାକ୍ତରୀରେ ପୋଙ୍ଗମିୟା ଗ୍ଲାବରା ଏବଂ ସଂସ୍କୃତରେ କରଞ୍ଜ, କରଜ, ନକ୍ତମାଳ ଓ ଚିରବିଲ୍ୱକ ପ୍ରଭୃତି କହନ୍ତି ।

କରଞ୍ଜ ପାଞ୍ଚ ପ୍ରକାର – ଡହର କରଞ୍ଜ, ଲତାକରଞ୍ଜ, କଣ୍ଟାକରଞ୍ଜ, ମାଙ୍ଗ୍ଡ଼ାକରଞ୍ଜ ଓ ଅମ୍ଳକରଞ୍ଜ ।

ଆୟୁର୍ବେଦୋକ୍ତ ଗୁଣ

କରଞ୍ଜ କଟୁ, କଷାୟ, ନେତ୍ରହିତକର, ମଳଭେଦକ, ଦନ୍ତଦୃଢ଼ କାରକ ଓ ଗରମ ଏବଂ କଫ, ପିତ୍ତ, ବାତ, ପ୍ରମେହ, ଶୂଳ, ଗୁଳ୍ମ, ଉଦାବର୍ତ୍ତ, ପ୍ଲୀହା, କଣ୍ଡୁ, ବିଚର୍ଚ୍ଚିକା, ଦଦ୍ରୁ, କୃମି, କୁଷ୍ଠ, କ୍ଷତ ଓ ଯାବତୀୟ ପ୍ରକାର ଚର୍ମରୋଗ ନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କରଞ୍ଜପତ୍ର ରସକୁ ସୋରିଷ ତେଲ ସଙ୍ଗେ ରାନ୍ଧି କଣ୍ଡୁ, କୁଷ୍ଠ, ଛଉ, ଯାଦୁ, କାଛୁ ଓ ମଚେଲା ପ୍ରଭୃତି ଚର୍ମରୋଗ ଉପରେ ମାଲିସ କଲେ ଅଳ୍ପଦିନେ ଆରୋଗ୍ୟ ହୁଏ ।

(ଖ) କରଞ୍ଜ ଡାଳକୁ ଭାଙ୍ଗିଆଣି ପ୍ରତ୍ୟହ ଦାନ୍ତକାଠି କଲେ ଯାବତୀୟ ଦାନ୍ତରୋଗ ଭଲ ହୁଏ ।

(ଗ) ଗୋଟିଏ କରଞ୍ଜ ମଞ୍ଜିସଙ୍ଗେ ୩ଟି ଗୋଲମରିଚ ଅଳ୍ପ ଜଳସଙ୍ଗେ ବାଟି ୭ ଥର ପିଇଲେ ପାଳିଜ୍ୱର ଭଲ ହୁଏ ।

(ଘ) କରଞ୍ଜ ମଞ୍ଜିର ତେଲକୁ ଯାବତୀୟ ଚର୍ମରୋଗରେ ଲଗାଇଲେ ଆରୋଗ୍ୟ ହୁଏ ।

## କାଇଁଚ

କାଇଁଚକୁ ଡାକ୍ତରୀରେ ଏ ବ୍ରସ୍ ପ୍ରିକଟୋରିୟାସ୍ ଏବଂ ସଂସ୍କୃତରେ ରକ୍ତ କାଇଁଚକୁ କାକଚିଞ୍ଚି, କାକଦନ୍ତୀ, ରକ୍ତିକା, ରକ୍ତଗୁଞ୍ଜା, କାକପିଲୁ, କାକନନ୍ଦୀ ଓ ଅଙ୍ଗାର ବଲ୍ଲରୀ ଏବଂ ଶ୍ୱେତଗୁଞ୍ଜା, ଉଚ୍ଚଟା ଓ କୃଷ୍ଣଳା ପ୍ରଭୃତି କୁହାଯାଏ ।

କାଇଁଚ ଦୁଇ ପ୍ରକାର ଯଥା :– ଶ୍ୱେତ କାଇଁଚ ଓ ରକ୍ତକାଇଁଚ

ଆୟୁର୍ବେଦୋକ୍ତ ଗୁଣ

ଉଭୟ ପ୍ରକାର କାଇଁଚ ଶୁକ୍ରବର୍ଦ୍ଧକ, କେଶର ଉପକାରକ ଓ ବଳକାରକ ଏବଂ ଜ୍ୱର, ବାୟୁ, ପିତ୍ତ, ଭ୍ରମ, ତୃଷ୍ଣା, ଶ୍ୱାସ, ମତ୍ତତା, ନେତ୍ରରୋଗ, କଣ୍ଡୁ, ବ୍ରଣ, କୃମି ଓ କୁଷ୍ଠରୋଗ ନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଶ୍ୱେତକାଇଁଚ ମୂଳକୁ ଆଣି ଜଳରେ ବାଟି ସର୍ପ ଦଂଶିତ କ୍ଷତରେ ଲେପନ ଦେଲେ ସର୍ପବିଷ ବିନଷ୍ଟ ହୁଏ ।

(ଖ) କାଇଁଚମଞ୍ଜି ଓ ଚିତାମୂଳ ଏ ଦୁହିଙ୍କି ସମଭାଗରେ ଆଣି ଜଳରେ ବାଟି ଲେପ ଦେଲେ ଧବଳ ଛଉ ନିବାରିତ ହୁଏ ।

(ଗ) ଦେହର କୌଣସି ସ୍ଥାନରେ ରକ୍ତଗଡ଼ି ଜମା ହୋଇଥିଲେ ତାହା ଉପରେ ପ୍ରଥମେ ଜଡ଼ାତେଲ ଉତ୍ତମରୂପେ ମାଲିସ କରି ତା ଉପରେ କାଇଁଚ ପତ୍ରଗୁଡ଼ିଏ ଲଗାଇଦେଲେ ସେ ରକ୍ତ ଖେଳିଯାଏ ।

(ଘ) କଞ୍ଚାକାଇଁଚ ରସକୁ ମୁଣ୍ଡରେ ବାରମ୍ବାର ଲଗାଇଲେ ମୁଣ୍ଡରୁ କେଶ ଉପୁଡ଼ି ଯାଉଥିଲେ-ମଧ୍ୟ ଘନ ହୋଇ ପୁଣି ଉଠେ ।

(ଙ) କାଇଁଚ ପତ୍ରକୁ ଚିକ୍‌କଣ କରି ବାଟି ସୋରିଷ ତେଲରେ ରାନ୍ଧି ସେହି ତୈଳକୁ ମାଲିସ କଲେ କଣ୍ଡୁ, ଦଦ୍ରୁ, ବ୍ରଣ, ବିଇଞ୍ଚି, ଶୁଷ୍କକଣ୍ଡୁ, କାଛୁ ଓ ସବୁପ୍ରକାର କ୍ଷତ ଶୀଘ୍ର ନିବାରିତ ହୁଏ ।

(ଚ) କାଇଁଚପତ୍ରର ରସ ସଙ୍ଗରେ ଟଭାଲେମ୍ବୁ ରସ ମିଶାଇ ୨/୩ ବାର ସର୍ବାଙ୍ଗରେ ମାଲିସ କଲେ କଣ୍ଡୁ ପ୍ରଭୃତି ସବୁପ୍ରକାର ଚର୍ମରୋଗ ବିନାଶ ପାଏ ।

(ଛ) କାଇଁଚକୁ ଘୋରି ସେହି ଅଠାକୁ ଦୁଇ ଗୋଡ଼ର ଦୁଇ ବୃଦ୍ଧାଙ୍ଗୁଷ୍ଠି ନଖରେ ଲେପନ କଲେ ସମସ୍ତ ପ୍ରକାର ଚକ୍ଷୁରୋଗ ଭଲହୁଏ ।

## କାର୍ପାସ

କାର୍ପାସକୁ ଉତ୍କଳ ଭାଷାରେ କପା, ଡାକ୍ତରୀରେ କଟନ୍‌ପ୍ଲାଣ୍ଟ ଏବଂ ସଂସ୍କୃତ ଭାଷାରେ ତୁଣ୍ଡିକେରୀ, ବାଦରା, ସମୁଦ୍ରାନ୍ତା, ବଦରୀ, ପଟଦା, ସୁକ୍ରପୁଷ୍ପା, କାପାସିକା, କପାସୀ, ଚବ୍ୟା, କାର୍ପାସସାରିଣୀ, ତୁଣ୍ଡକେରିକା, ଗୁଡ଼, ମରୁରବା ଓ ପିଚ ପ୍ରଭୃତି କୁହାଯାଏ । କପା ଗଛକୁ ସମସ୍ତେ ଚିହ୍ନନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

କପା କଷାୟ ମଧୁରରସ, ଲଘୁ, ଅଳ୍ପ ଉଷ୍ଣବୀର୍ଯ୍ୟ, ସ୍ତନ୍ୟବର୍ଦ୍ଧକ, ବାୟୁନାଶକ, ବଳକାରକ ଓ ଶୀତବୀର୍ଯ୍ୟ ଏବଂ ଦାହ, ଶ୍ରମ, ଭ୍ରମ, ପିତ୍ତ, ପିପାସା, ବମନ ଓ ମୂର୍ଚ୍ଛା ନିବାରକ ।

କପାପତ୍ର ରକ୍ତବର୍ଦ୍ଧକ, ବାୟୁ ନିବାରକ ଓ ମୁତ୍ରବର୍ଦ୍ଧକ ଏବଂ କର୍ଣ୍ଣପୀଡ଼କ ଓ କର୍ଣ୍ଣନାଦ ନିବାରକ ।

କପାଫଳ ବାୟୁନାଶକ, ମୁତ୍ରବର୍ଦ୍ଧକ ଓ ରକ୍ତଦୋଷ ନିବାରକ ଏବଂ ଯାବତୀୟ ପ୍ରକାର କର୍ଣ୍ଣପୀଡ଼ା ବିନାଶକ । କପାଫଳର ମଞ୍ଜି ସ୍ତନ୍ୟ ଜନକ, ସ୍ନିଗ୍ଧ, ଶୁକ୍ରବର୍ଦ୍ଧକ, ଗୁରୁପାକ ଓ କଫକାରକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କପାଗଛର କଷିଫଳର ରସକୁ ନିଆଁରେ ଗରମ କରି କାନରେ ପକାଇଲେ କାନରୁ ପୁଯ ବହିବା, କର୍ଣ୍ଣକୀଟ, କର୍ଣ୍ଣନାଦ, କର୍ଣ୍ଣବଧିରତା ଓ କର୍ଣ୍ଣଦୁର୍ଗନ୍ଧ ପ୍ରଭୃତି ଶୀଘ୍ର ନିବାରିତ ହୁଏ ।

(ଖ) କପାଗଛକୁ ଶୁଖାଇ ପୋଡ଼ି ତାହାର ଭସ୍ମକୁ ବିଶୁଦ୍ଧ ସୋରିଷତେଲ ସଙ୍ଗରେ ଖଲି ବିଝିରେ ୨/୩ ଥର ଲଗାଇଲେ ଭଲ ହୁଏ ।

(ଗ) କପାମଞ୍ଜିକୁ କାଞ୍ଜିପାଣିରେ ବାଟି ଛଉ ଉପରେ ଲଗାଇଲେ ଅଳ୍ପଦିନ ମଧ୍ୟରେ ଛଉ ଭଲ ହୁଏ ।

(ଘ) କପାଗଛର ପବନ ଦେହରେ ବାଜିଲେ ମନୁଷ୍ୟ ହୃଷ୍ଟପୁଷ୍ଟ ଓ ବଳିଷ୍ଠ ହୁଏ ।

# କାଗଜୀ ଲେମ୍ବୁ

କାଗେଜୀ ଲେମ୍ବୁକୁ ଇଂରାଜୀରେ ଲେମନ୍, ଡାକ୍ତରୀରେ ସାଇଟ୍ରସ ମେଡିକା ଏବଂ ସଂସ୍କୃତରେ ବହ୍ନି, ଦୀପ୍ତ, ବହ୍ନିବୀଜ, ଅମ୍ଳସାର, ନିମ୍ବୁ, ନିମ୍ବୁକ ଓ ରୋଚନ ପ୍ରଭୃତି କୁହଯାଏ ।

ଆୟୁର୍ବେଦୋକ୍ତ ଗୁଣ

କାଗଜୀ ଲେମ୍ବୁ ଅମ୍ଳକଟୁରସ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ, ପାଚକ, ଲଘୁପାକ, ଅଗ୍ନିବର୍ଦ୍ଧକ, ରୁଚିକର ଓ ଚକ୍ଷୁର ହିତକର ଏବଂ ଗୁଳ୍ମ, ଆମଦୋଷ, ଅଗ୍ନିମାନ୍ଦ୍ୟ, ଅଜୀର୍ଣ୍ଣ, ବିସୂଚିକା, ଶୂଳ, କାସ, କଣ୍ଠରୋଗ, ଉଦରରୋଗ, ବମନ, ପିପାସା, ବାୟୁବିକାର, ଅରୁଚି ଓ ତ୍ରିଦୋଷ ନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କାଗଜୀ ରସରେ ଖାଣ୍ଟି ଖସାତେଲ ମିଶାଇ ନସ୍ୟ ଗ୍ରହଣ କଲେ ଅଧାକପାଳୀ ବିନ୍ଧା ଭଲ ହୁଏ । ଏହି ଦ୍ରବ୍ୟକୁ ମୁଣ୍ଡରେ ମାଲିସ କଲେ ଉନ୍ମାଦବାତ ଭଲ ହୁଏ ।

(ଖ) କାଗଜୀ ରସ, କାଞ୍ଜିପାଣି, ମହୁ ଓ କନ୍ଦ ଏ ଗ୍ୱରି ଦ୍ରବ୍ୟକୁ ଏକତ୍ର ମିଶାଇ ପାନ କରାଇଲେ କମ୍ପଜ୍ୱର ଶୀଘ୍ର ଛାଡ଼ିଯାଏ ।

(ଗ) କାଗଜୀ ଲେମ୍ବୁର ରସରେ ଅଫିମ ଓ ଫଇଟିକିରୀ ମିଶାଇ ତହିଁରୁ ଏକ ଏକ ବିନ୍ଦୁ କାନରେ ପକାଇଲେ କାନର ସମସ୍ତ ପ୍ରକାର ବେଦନା ଓ କର୍ଣ୍ଣସ୍ରାବ ପ୍ରଶମିତ ହୁଏ ।

(ଘ) କାଗଜୀଲେମ୍ବୁ ରସରେ ପିପ୍ପଳୀଗୁଣ୍ଡା ମିଶାଇ ୨୧ ପାନ ସେବନ କଲେ ବହୁଦିନର ଗୁଳ୍ମ ବିନାଶ ହୁଏ ।

(ଙ) କାଗଜୀଲେମ୍ବୁ ରସରେ ଶୁଣ୍ଠି ଗୁଣ୍ଡା ଓ ସୈନ୍ଧବ ଲୁଣ ମିଶାଇ ସାତପାନ ସେବନ କଲେ ଅସାଧ୍ୟ ଆମଦୋଷ ପରିପାକ ହୋଇଯାଏ ।

(ଚ) କାଗଜୀଲେମ୍ବୁ ରସରେ ସୈନ୍ଧବ ଲବଣ ମିଶାଇ ୩ ପାନ ସେବନ କଲେ ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ରୋଗ ବିନାଶ ପାଏ ।

(ଛ) ହଇଜାର ପ୍ରାଦୁର୍ଭାବ ସମୟରେ ପ୍ରତ୍ୟହ ଗୋଟିଏ ଲେଖାଏଁ କାଗଜୀଲେମ୍ବୁ ରସକୁ ଖାଦ୍ୟଦ୍ରବ୍ୟ ସଙ୍ଗରେ ଖାଇବାର ଅଭ୍ୟାସ କଲେ ସେହି ବ୍ୟକ୍ତିର ଦେହରେ ହଇଜା ରୋଗ ପ୍ରବେଶ କରିପାରେ ନାହିଁ ।

(ଜ) କାଗଜୀଲେମ୍ବୁ ରସରେ ଯାଷ୍ଟିମଧୁ ଗୁଣ୍ଡ ମିଶାଇ ତିନିପାନ ସେବନ କଲେ ଶୁଷ୍କକାସ ତରଳ ହୁଏ ।

(ଝ) କାଗଜୀଲେମ୍ବୁ ରସରେ ଅଳ୍ପ ଗୋଲମରିଚ ଗୁଣ୍ଡା ମିଶାଇ ସେବନ କଲେ ଶୂଳରୋଗ ନିବାରିତ ହୁଏ ।

## କାଙ୍କଡ଼

କାଙ୍କଡ଼କୁ ଇଂରାଜୀରେ ଆଲେକ୍‌ଜେଣ୍ଡ୍ରାଇନ୍ ସେନା ଏବଂ ସଂସ୍କୃତରେ ମାର୍କଣ୍ଡିକା, ଭୂମିବଲ୍ଲୀ, କର୍କୋଟକୀ, ମହାକାଳୀ ଓ ମୃଦୁ ରେଚନୀ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

କାଙ୍କଡ଼ ମିଷ୍ଟରସ, କଳକାରକ ଓ କାୟ ଶୋଧକ ଏବଂ କୁଷ୍ଠ, ବିଷ, କାସ, ଗୁଳ୍ମ, ଉଦର, ଦୁର୍ଗନ୍ଧ, ବମନ, ବିରେଚନ ଓ ବହୁରୋଗ ନାଶକ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କାଙ୍କଡ଼ପତ୍ର ରସ ସଙ୍ଗରେ ଅଳ୍ପ ଟାଙ୍ଗଣାଖଇ ଚୂର୍ଣ୍ଣ ମିଶାଇ ସାତପାନ ସେବନ କଲେ ପେଟରୁ ଗୁଳ୍ମ, ଶୂଳ, ବାୟୁ ଓ ଅଜୀର୍ଣ୍ଣ ପ୍ରଭୃତି ରୋଗମାନ ଦୂର ହୁଏ ।

(ଖ) କାଙ୍କଡ଼ପତ୍ରକୁ ଜଳରେ ସିଝାଇ ସେହି ଜଳରେ ସ୍ନାନ କଲେ ଦେହରୁ ଚର୍ମଉକୁଣୀ ସବୁ ନଷ୍ଟ ହୁଅନ୍ତି ।

(ଗ) କାଙ୍କଡ଼ ମୂଳକୁ ଆଣି ଉଷୁନା ଚାଉଳ ସଙ୍ଗରେ ବାଟି ଗାଈକୁ ଖୁଆଇଲେ ସେ ବହୁତ ଦୁଧ ଦିଏ ।

(ଘ) କାଙ୍କଡ଼ ଲତା ଓ ପତ୍ରକୁ ଶୁଖାଇ ଏକତ୍ର ଜଳରେ ସିଝାଇ ସେହି ସିଝାଜଳ ସଙ୍ଗରେ ଅଳ୍ପ ଗୋଲମରିଚ ଗୁଣ୍ଡା ମିଶାଇ ସେବନ କଲେ ସ୍ଥାବର ଓ ଜଙ୍ଗମ ଉଭୟ ବିଷ ବିନଷ୍ଟ ହୁଏ ।

(ଙ) କାଙ୍କଡ଼ ଫଳକୁ କିଛିଦିନ ଅଭ୍ୟାସକରି ଘୃତରେ ଭାଜି ଭକ୍ଷଣ କଲେ ଚକ୍ଷୁର ନଷ୍ଟଜ୍ୟୋତି ପୁନଃ ପ୍ରକାଶିତ ହୁଏ ।

# କୁଶ

କୁଶକୁ ଡାକ୍ତରୀରେ ପୋଆସାୟିନୋ ସୁରୋଇଡେସ୍ ଏବଂ ସଂସ୍କୃତରେ କୁତୁପ, ଦର୍ଭ, କୁଥ, ପବିତ୍ର, ଯାଜ୍ଞିକ, ହସ୍ବଗର୍ଭ, ବର୍ହି, କୁଶ, ସୂଚ୍ୟଗ୍ର, ଯଜ୍ଞଭୂଷଣ, କ୍ଷୁରପତ୍ର ଓ ଦୀର୍ଘପତ୍ର ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

କୁଶ ମଧୁର କଷାୟ ରସ, ଶୀତଳ, ତ୍ରିଦୋଷ ନାଶକ, ଆମୃଶୁଦ୍ଧି କାରକ ଓ କ୍ଳାନ୍ତି ନାଶକ ଏବଂ ଅଶ୍ମରୀ, ମୂତ୍ରକୃଚ୍ଛ୍ର, ରକ୍ତପ୍ରଦର, ବସ୍ତିବେଦନା ଓ ଗୁହ୍ୟପୀଡ଼ା ନିବାରକ ଅଟେ ।

କୁଶମୂଳ ଶୀତଳ, ମଧୁରରସ, ରୁଚିକାରକ, ମୁତ୍ରପରିଷ୍କାର ଓ ପିତ୍ତନାଶକ ଏବଂ ଜ୍ୱର, ତୃଷା, କାସ, ଶ୍ୱାସ, ରକ୍ତ ଓ କାମଳ ରୋଗ ନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କୁଶମୂଳ ଓ ବାଡ଼ି ଅର୍ଏଳା ମୂଳ ସମପରିମାଣରେ ଆଣି ଏକତ୍ର ଗୃଉଳଧୂଆ ପାଣିରେ ବାଟି ସାତପାନ ସେବନ କଲେ ସ୍ତ୍ରୀମାନଙ୍କର ପ୍ରଦର ରୋଗ ଦୂର ହୁଏ ।

(ଖ) କୁଶମୂଳ ସଙ୍ଗରେ ଅଳ୍ପ ଗୋଲମରିଚ ମିଶାଇ ପ୍ରତ୍ୟେକ ଝାଡ଼ା ପରେ ୨/୩ ଥର ପର୍ଯ୍ୟନ୍ତ ପାନକଲେ ସମସ୍ତ ପ୍ରକାର ଅତିସାର ଓ ବିସୂଚିକା ପ୍ରଭୃତି ଯାବତୀୟ ଝାଡ଼ା ନିବାରଣ ହୁଏ ।

(ଗ) କୁଶଗଛକୁ ମୂଳ ସହିତ ଆଣି ଜଳରେ ମିଶାଇ ସେହି ଜଳ ସଙ୍ଗରେ ଅଳ୍ପ ମହୁ ମିଶ୍ରିତ କରି ତିନିପାନ ସେବନ କଲେ ତ୍ରିଦୋଷ ଜ୍ୱର ବିନାଶ ହୁଏ ।

(ଘ) କୁଶଗଛର ମୂଳକୁ ଗବ୍ୟଦୁଗ୍ଧ ସଙ୍ଗରେ ବାଟି ସାତଦିନ ପର୍ଯ୍ୟନ୍ତ ସେବନ କଲେ ମୂତ୍ରକୃଚ୍ଛ୍ର ରୋଗ ଉପଶମ ହୁଏ ।

(ଙ) କୁଶଗଛର ମୂଳକୁ ବାଟି କଞ୍ଚା ଗବ୍ୟଦୁଗ୍ଧ ସଙ୍ଗରେ ଗୋଳି ଅତି ପ୍ରଭାତରୁ ପାନ କଲେ ମୁତ୍ର ପରିଷ୍କାର ହୁଏ ।

(ଚ) କୁଶଗଛ ମୂଳକୁ ଛେଚି ତହିଁରୁ ରସ ବାହାର କରି ସେହି ରସ ସଙ୍ଗରେ ଅଳ୍ପ ମିଶ୍ରିଗୁଣ୍ଡ ପ୍ରକ୍ଷେପ ଦେଇ ତିନିପାନ ସେବନ କଲେ ପିତ୍ତ ଶାନ୍ତିହୁଏ ।

(ଛ) କୁଶମୂଳ, ହଳଦି, ମରିଚ, ଅଦା ଓ କଳାଜୀରା ଏ ପ୍ରତ୍ୟେକ ଦ୍ରବ୍ୟକୁ ସମାନ ଭାଗରେ ଆଣି ଏକତ୍ର ଅର୍ଦ୍ଧକୁଟିତ ଅବସ୍ଥାରେ ଜଳରେ ସିଝାଇ ଅଷ୍ଟାବଶେଷ ରଖି ସେଥିରୁ

ଅଳ୍ପ ନେଇ ତହିଁରେ କିଞ୍ଚିତ୍ ଗୋମୂତ୍ର ମିଶାଇ ସାତପାନ ସେବନ କଲେ ପାଣ୍ଡୁ ଓ କାମଳ ରୋଗ ନିବାରିତ ହୁଏ ।

(ଜ) କୁଶମୂଳ, ବେଲମୂଳ, ଗରଗଡ଼ମୂଳ, ଭୂଇଁନିମ୍ବ ଓ ନିମ୍ବ ଛେଲି ଏହି ପାଞ୍ଚଦ୍ରବ୍ୟକୁ ସମଭାଗରେ ଆଣି ଏକତ୍ର କୁଟି ଚୂର୍ଣ୍ଣ କରି ରଖିଥିବ । ଏହି ଚୂର୍ଣ୍ଣରୁ ଭ°। ଓଜନର ଆଣି ତହିଁରେ ଅଳ୍ପ କନ୍ଦ ମିଶାଇ ତାହାକୁ ଉଷ୍ଣଜଳରେ ଗୋଳି ସାତପାନ ସେବନ କଲେ ସମସ୍ତ ପ୍ରକାର ଉଦରୀ ରୋଗ ଓ ସୂତିକା ଜ୍ୱର ପ୍ରଭୃତି ଶୀଘ୍ର ଭଲ ହୋଇଯାଏ ।

## କୋଇଲେଖା

କୋଇଲେଖା ଗଛକୁ କେହି କେହି କୋଇଲିଖିଆ ଏବଂ ଡାକ୍ତରୀରେ ରୁଲିଆ ଲଙ୍ଗିଫୋଲିଆ ଏବଂ ସଂସ୍କୃତରେ ଇକ୍ଷୁଗନ୍ଧା, କାଣ୍ଡେକ୍ଷୁ, ଇକ୍ଷୁରସ, କ୍ଷୁର, ଶୃଗାଳୀ, ଶୃଙ୍ଗକ, ଶୃଗାଳଘଣ୍ଟା, ବଜ୍ରାସ୍ଥି, ବଜ୍ରକଣ୍ଟକ, ଶୃଙ୍ଖଳା, ଶୃଙ୍ଖଳିକା, ଇକ୍ଷୁଚକ, ପିକୁକ୍ଷଣା, ପିଚ୍ଛଳା ଓ ମାଖୁରେଣ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

କୋଇଲେଖା ଅମ୍ଳ, ମଧୁର, ତିକ୍ତରସ, ଶୀତବୀର୍ଯ୍ୟ, ବଳ ବୃଦ୍ଧିକାରକ, ବର୍ଣ୍ଣପ୍ରସାରକ, ଶୁକ୍ରବର୍ଦ୍ଧକ, ପିତ୍ତଜନକ ଓ ରୁଚିକାରକ ଏବଂ ଶୋଥ, ଆମବାତ, ଅଶ୍ମରୀ, ବାତରକ୍ତ, ତୃଷ୍ଣା, ପିତ୍ତାତିସାର, ପାଣ୍ଡୁ, କାମଳ, ଶୁକ୍ରବିକୃତି, ଶୁକ୍ରକ୍ଷୀଣ, ଶୁକ୍ରତାରଲ୍ୟ ଓ ସ୍ତ୍ରୀମାନଙ୍କର ଚଳଗର୍ଭ ପ୍ରଭୃତି ରୋଗ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କୋଇଲେଖା ପତ୍ର ରସରେ ଅଳ୍ପ ମହୁ ମିଶାଇ ସାତପାନ ସେବନ କଲେ କୃମି, ଅସାଧ୍ୟ ପାଣ୍ଡୁ ଓ କାମଳ ରୋଗ ପ୍ରଭୃତି ଚଞ୍ଚଳ ଭଲ ହୁଏ ।

(ଖ) କୋଇଲେଖା ପତ୍ର ଚୂର୍ଣ୍ଣରେ ସମପରିମିତ ଗୋଲମରିଚ ଗୁଣ୍ଡା ମିଶାଇ ସାତ ଆଠପାନ ସେବନ କଲେ ଆମବାତ, ବାତରକ୍ତ, ଅଶ୍ମରୀ ଓ ଶୋଥ ପ୍ରଭୃତି ରୋଗ ସହଜରେ ଭଲ ହୁଏ ।

(ଗ) କୋଇଲେଖା ମଞ୍ଜିର ଚୂର୍ଣ୍ଣକୁ ଗବ୍ୟଦୁଗ୍ଧରେ ସାତପାନ ସେବନ କଲେ ଶୁକ୍ରତାରଲ୍ୟ, ଶୁକ୍ରକ୍ଷୟ, ଶୁକ୍ରବିକୃତି ଓ ଇନ୍ଦ୍ରିୟକ୍ଷୀଣତା ପ୍ରଭୃତି ରୋଗ ଭଲ ହୁଏ ।

## ଗଇଶ

ଗଇଶକୁ ଡାକ୍ତରୀରେ ଲେଉକିସ୍ ଲିନିପୋଲିଆ ଏବଂ ସଂସ୍କୃତରେ ଗବୀଶ, ଦ୍ରୋଣା, ଦ୍ରୋଣପୁଷ୍ପୀ ଓ ଫଳେପୁଷ୍ପା କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ଗଈଶ କଟୁରସ, ଉଷ୍ଣବୀର୍ଯ୍ୟ, ରୁଚିକର, ମଧୁର, ବିପାକ, ଅଗ୍ନିମାନ୍ଦ୍ୟକାରକ, ମାଳଭେଦକ ଓ ସୁପଥ୍ୟ ଏବଂ କଫ, ଜ୍ୱର, ଅର୍ଶ, କୃମି, କାମଳ, ସର୍ପବିଷ, ଶୋଥ ଓ ବାତଶ୍ଳେଷ୍ମା ରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଗଈଶ ପତ୍ରର ରସ ସଙ୍ଗେ କିଛି ଗୋଲମରିଚ ଚୂର୍ଣ୍ଣ ମିଶାଇ ସର୍ପଦଂଶିତ ବ୍ୟକ୍ତିକି ଏକଘଣ୍ଟା ଅନ୍ତରରେ ଏକ ଏକ ପାନ କରି ସେବନ୍ କରାଇଲେ, ସେହି ବ୍ୟକ୍ତି ଦେହରୁ ସର୍ପବିଷ ବିନାଶ ହୁଏ । କେବଳ ଗଈଶ ପତ୍ର ରସ ପାନ କଲେ ମଧ୍ୟ ସର୍ପବିଷ ନାଶ ପାଏ । ସର୍ବାଙ୍ଗରେ ବିଷ ମିଶିଯାଇ ଦେହ ଝିମି ଝିମି ହୋଇ ଯାଉଥିଲେ ମଧ୍ୟ ଗଈଶ ପତ୍ର ରସକୁ ନାକରେ ୨/୩ ବୁନ୍ଦା ପ୍ରମାଣରେ ପକାଇଲେ ହଠାତ୍ ସର୍ପବିଷ ସେହି ବ୍ୟକ୍ତି ଦେହରୁ ଉଭେଇ ଯାଏ । ସର୍ପବିଷ ନିବାରଣ ନିମିତ୍ତ ଏହା ଗୋଟିଏ ପ୍ରଧାନ ଔଷଧ ଅଟେ ।

(ଖ) ଗଈଶ ପତ୍ରକୁ ଶାଗକରି ଭାଜି ଖାଇଲେ ପେଟ ଭିତରର ଯାବତୀୟ କୃମି ଓ ବାୟୁରୋଗ ଭଲ ହୁଏ । ଏହାଦ୍ୱାରା ଝାଡ଼ା ପରିଷ୍କାର ହୁଏ ।

(ଗ) ଗଈଶ ପତ୍ର ରସ ସଙ୍ଗରେ ସମପରିମିତ ମହୁ ମିଶାଇ ଚାରି ପାଞ୍ଚ ଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ଯାବତୀୟ ବାତପିତ୍ତ, କଫ, ଶ୍ୱାସ ଓ ପ୍ରମେହ ରୋଗ ଭଲ ହୁଏ ।

(ଘ) କେତେଗୁଡ଼ିଏ କଞ୍ଚା ଗଈଶ ପତ୍ରକୁ ଆଣି ଶୁଖାଇ କୁଟି ଚୂର୍ଣ୍ଣ କରି ସେହି ଚୂର୍ଣ୍ଣରୁ ଅଳ୍ପ ନେଇ ଯେ କୌଣସି ପ୍ରକାର ଘାଆ ଉପରେ ଦେଇ କନା ପଟି ବାନ୍ଧିଦେଲେ ସେ ଘାଆ ଶୁଖିଯାଏ ।

## ଗବ (ଏରଣ୍ଡ)

ଏରଣ୍ଡକୁ ଉତ୍କଳରେ ଗବଗଛ, ଡାକ୍ତରୀରେ କାଷ୍ଟରପ୍ଲାଣ୍ଟ ଏବଂ ସଂସ୍କୃତରେ ଏରଣ୍ଡ, ରୁବୁଜ, ତ୍ରିପୁଟଫଳ, ଉରୁବକ, ବ୍ୟାଘ୍ରପୁଚ୍ଛ, ଗାନ୍ଧର୍ବ ହସ୍ତ, ଚକ୍ଷୁ ମଣ୍ଡ, ବର୍ଦ୍ଧମାନ, ପଞ୍ଚାଙ୍ଗୁଳ, ବାତମ୍ନକ, ଅମଣ୍ଡ, ଆମଣ୍ଡ, ଦୀର୍ଘଦଣ୍ଡକ, ଶୂଳଶତ୍ରୁ, ତୁଚ୍ଛକ, ବାତାରି ଓ ବ୍ରହ୍ମଣା ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଏରଣ୍ଡ ମଧୁର ରସ, ଉଷ୍ଣବୀର୍ଯ୍ୟ ଓ ଗୁରୁପାକ ଏବଂ କଟିଶୂଳ, ଉଦର ଶୂଳ, ଶିରଃଶୂଳ, ଜ୍ୱର, ଶୋଥ, ଉଦର, ବ୍ରଧ୍ନ, କାସ, ଶ୍ୱାସ, କଫ, କୁଷ୍ଠ, ଆନାହ, ଆମେଦୋଷ ଓ ବାୟୁ ଉପଦ୍ରବ ନିବାରକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଗବ ତେଲ ୨ ଭରି ଆଣି କିଛି ଉଷ୍ଣଜଳ ସଙ୍ଗରେ ମିଶାଇ ସେବନ କଲେ ଉତ୍ତମ ଝାଡ଼ା ହୁଏ ।

(ଖ) କେତେଗୁଡ଼ିଏ ଗବପତ୍ରକୁ ଆଣି ଜଳରେ ସିଝାଇ ସେଥିରେ ଚିନି ବା କନ୍ଦ ମିଶାଇ ଘରେ ବା ବାହାରେ ରଖିଦେଲେ ମାଛିଗୁଡ଼ାକ ମରିଯାନ୍ତି ।

(ଗ) ଶ୍ୱେତ ଗବଗଛର ଅଠା ସଙ୍ଗରେ ଖଜୁରଚୂର୍ଣ୍ଣ ମିଶାଇ ପ୍ରଲେପ ଦେଲେ ଅଳ୍ପ ଦିନର ନଳି ଘା ଶୀଘ୍ର ଶୁଷ୍କ ହୋଇଯାଏ ।

(ଘ) ଗବପତ୍ର ଉପରେ ଗବ୍ୟଘୃତ ମାଲିସ କରି ନିଆଁକୁ ଦେଖାଇ ଉଷ୍ମ ଥାଉଁ ଆଣ୍ଠୁ ଓ ଗଣ୍ଠିରେ ବନ୍ଧନ କଲେ ଆଣ୍ଠୁବାତ, ଗଣ୍ଠିବାତ ଓ ଆମବାତ ପ୍ରଭୃତି ରୋଗ ଦୂର ହୁଏ ।

# ଗୁଳୁଚି

ଗୁଳୁଚିକୁ ଡାକ୍ତରୀରେ ଟାଇନସ୍ ପୋରା କର୍ଡିଫୋଲିଆ ଏବଂ ସଂସ୍କୃତରେ ଗୁଡୁଚୀ, ବତ୍ସାଦନୀ, ଅମୃତା, ସୋମବଲ୍ଲୀ, କୁଣ୍ଡଳୀ, ଅମୃତବଲ୍ଲୀ, ରସାୟନୀ, ଚନ୍ଦ୍ରହସା ଓ ଜୀବନ୍ତୀ ପ୍ରଭୃତି କହନ୍ତି ।

ଆୟୁର୍ବେଦୋକ୍ତ ଗୁଣ

ଗୁଳୁଚି ଜ୍ୱରଘ୍ନ, କଟୁତିକ୍ତ କଷାୟ ରସ, ରସାୟନ, ଉଷ୍ଣବୀର୍ଯ୍ୟ, ଲଘୁ, ବଳକାରକ ଓ ଅଗ୍ନିଦୀପକ ଏବଂ ତ୍ରିଦୋଷ, ଆମ, ଜ୍ୱର, ତୃଷା, ଦାହ, ପ୍ରମେହ, କାଶ, ପାଣ୍ଡୁ, କାମଳ, କୁଷ୍ଠ, ବାତରକ୍ତ, କୃମି, ବମି, ଶ୍ୱାସ, ଅର୍ଶ, ମୂତ୍ରକୃଚ୍ଛ୍ର, ବାୟୁ ଓ ହୃଦ୍ରୋଗ ନାଶକ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଗୁଳୁଚି ଲତାର ରସ ସଙ୍ଗରେ କିଛି ମହୁ ମିଶାଇ ୭ ଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ଯାବତୀୟ ଜ୍ୱର ଭଲ ହୁଏ ।

(ଖ) ଗୁଳୁଚି ରସରେ କିଞ୍ଚିତ୍ ମିଶ୍ରି ଓ ହଳଦୀଗୁଣ୍ଡା ପ୍ରକ୍ଷେପ ଦେଇ ଶିଶୁମାନଙ୍କୁ ସେବନ କରାଇଲେ ସେମାନଙ୍କର ଯାବତୀୟ ଜ୍ୱର, ପେଟବେଦନା, କୃମି ଦୋଷ, ଦାନ୍ତରଗଡ଼ା ଓ ପିହୁଳା ପ୍ରଭୃତି ଭଲ ହୁଏ ।

(ଗ) ଗୁଳୁଚି ରସ ଓ ମହୁ ସମପରିମାଣରେ ମିଶାଇ ୨/୩ ଦିନ ପର୍ଯ୍ୟନ୍ତ ସେବନ କଲେ ମେହ, ପ୍ରମେହ ଓ ସମସ୍ତ ପ୍ରକାର ଧାତୁଦୋଷ ଭଲ ହୁଏ ।

(ଘ) ଗୁଳୁଚି ରସରୁ ୨/୪ ବୁନ୍ଦା ନାକରେ ପକାଇଲେ ପିତ୍ତଜ୍ୱର, ଶିରଃଶୂଳ, ଅର୍ଧକପାଳି ବିନ୍ଧା ଓ ମୁଣ୍ଡ ବୁଲାଇବା ପ୍ରଭୃତି ଶିରରୋଗ ଶୀଘ୍ର ଭଲ ହୁଏ ।

# ଘୃତକୁମାରୀ

ଘୃତକୁମାରୀକୁ ଉତ୍କଳରେ ଘିକୁଆଁରୀ, ଡାକ୍ତରୀରେ ଯ୍ୟାଲୋଇ ଇଣ୍ଡିକା ଏବଂ ସଂସ୍କୃତରେ କୁମାରୀ, ଘୃତକୁମାରୀ ଗୃହକନ୍ୟା ଓ ଘୃତକୁମାରୀକା ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

ଘୃତକୁମାରୀ ତିକ୍ତ ମଧୁର ରସ, ଭେଦକ, ରସାୟନ, ଶୀତବୀର୍ଯ୍ୟ, ଚକ୍ଷୁ ହିତକାରକ, ପୁଷ୍ଟିଜନକ, ଶୁକ୍ରବର୍ଦ୍ଧକ ଓ ବର୍ଣ୍ଣକାରକ ଏବଂ ଗୁଳ୍ମ, ପ୍ଳୀହା, ବିଷ, ବାୟୁ, ଯକୃତବୃଦ୍ଧି, ଜ୍ୱର, ବିସ୍ଫୋଟକ, ରକ୍ତପିତ୍ତ, ଚର୍ମରୋଗ, ଅଜୀର୍ଣ୍ଣ ଓ ଅଗ୍ନିଦଗ୍‌ଧକ୍ଷତ ପ୍ରଭୃତିର ବିନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଘିକୁଆଁରୀ ରସକୁ ମୁଣ୍ଡରେ ଘର୍ଷଣ କଲେ ବାତପିତ୍ତ ଶାନ୍ତି ହୁଏ ଓ ମସ୍ତକ ଶୀତଳ ରହେ ।

(ଖ) ଘିକୁଆଁରୀ ରସରେ ଅଳ୍ପ କଲିଚୂନ ପରୀକ୍ଷା ଦେଇ ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ସକାଳେ ସେବନ କଲେ କ୍ଷୁଧା ବୃଦ୍ଧି ହୁଏ ।

(ଗ) ଘିକୁଆଁରୀ ରସରେ ଅଳ୍ପ କଲିଚୂନ ପରୀକ୍ଷା ଦେଇ ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ସକାଳେ ସେବନ କଲେ କ୍ଷୁଧା ବୃଦ୍ଧି ପାଏ ।

(ଘ) ଘିକୁଆଁରୀ ରସରେ ଅଳ୍ପ ଅଦାରସ ମିଶାଇ ସାତପାନ ସେବନ କଲେ ବାତରୋଗ ବିନାଶ ହୁଏ ।

(ଙ) ଘିକୁଆଁରୀ ରସରେ ସୈନ୍ଧବ ଲବଣ ଚୂର୍ଣ୍ଣ ମିଶାଇ ସାତପାନ ସେବନ କଲେ କାସ, ଶ୍ୱାସ ଦୂର ହୁଏ ।

(ଙ) ଘିକୁଆଁରୀ ରସ ସଙ୍ଗରେ ପିପ୍‌ପଳୀ ଚୂର୍ଣ୍ଣ ମିଶାଇ ସାତପାନ ସେବନ କଲେ କାସ, ଶ୍ୱାସ ଦୂର ହୁଏ ।

# ଚମ୍ପକ

ଚମ୍ପକକୁ ଉତ୍କଳରେ ଚମ୍ପା, ଡାକ୍ତରୀରେ ମିଚେଲିଆ ଚମ୍ପକା ଏବଂ ସଂସ୍କୃତରେ ଗନ୍ଧେୟ, କୁସୁମାଧିପ, ହେମପୁଷ୍ପକ, ଉଗ୍ରଗନ୍ଧ, ନାଗପୁଷ୍ପ, ସ୍ୱର୍ଣ୍ଣପୁଷ୍ପ, ଶୀତଳଚ୍ଛଦ, ଭୃଙ୍ଗମୋହୀ, ସ୍ଥିରଗନ୍ଧ, ଦୀପପୁଷ୍ପ, ଅତିଗନ୍ଧକ, ପୀତପୁଷ୍ପ, ହେମାହ୍ୱ, ବନଦୀପ ଓ ସୁକୁମାର ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଚମ୍ପାଗଛ କଟୁତିକ୍ତ, କଷାୟ ରସ ଓ ଶୀତଳ ଏବଂ କଣ୍ଡୁ, କୁଷ୍ଠ, ବ୍ରଣ ଦାହ, କୃମି, କଫ, ମୂତ୍ରକୃଚ୍ଛ୍ର, ବାତରକ୍ତ ଓ ପିତ୍ତ ଶାନ୍ତିକାରକ । ଚମ୍ପାଫୁଲ ଅଳ୍ପ ଶୀତୋଷ୍ଣବୀର୍ଯ୍ୟ, ସୁଗନ୍ଧ, କଫନାଶକ ଓ ରକ୍ତପିତ୍ତ ନିବାରକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଚମ୍ପାଗଛର ପତ୍ରକୁ ଆଣି ଛେଚି ତହିଁରୁ ରସ ବାହାର କରି ସେହି ରସର ୧ଭରିରେ ସମପରିମିତ ଚୂନପାଣି ମିଶାଇ ସେବନ କଲେ କୃମି ବିନଷ୍ଟ ହୁଏ ।

(ଖ) ଚମ୍ପାପତ୍ର ରସକୁ ମୁଣ୍ଡରେ ଲଗାଇଲେ ମୁଣ୍ଡରୁ ଉକୁଣୀ ଏବଂ ଦେହରେ ଲଗାଇଲେ ଦେହରୁ ଚମଉକୁଣୀ ଏକାବେଳକେ ନିର୍ମୂଳ ହୁଅନ୍ତି ।

(ଗ) ଚମ୍ପାପତ୍ର ରସ ସଙ୍ଗରେ ହଳଦିକୁ ବାଟି ଦେହରେ ଲଗାଇଲେ ଯାଦୁ ଭଲ ହୁଏ ।

(ଘ) ଚମ୍ପାପତ୍ର ରସ ସଙ୍ଗରେ ହଳଦିକୁ ବାଟି ଦେହରେ ଲଗାଇଲେ ଦେହରୁ ଶୁଷ୍କକଣ୍ଡୁ, କଣ୍ଡୁ, କାଛୁ, ଯାଦୁ, ବ୍ରଣ, ବିଇଣ୍ଠି, ବିଚର୍ଚ୍ଚିକା ଓ ବିସ୍ଫୋଟକ ପ୍ରଭୃତି ଚର୍ମରୋଗ ଦୂର ହୁଏ ।

(ଙ) ଚମ୍ପାପତ୍ର ରସ ସଙ୍ଗରେ ଅଦାରସ ମିଶାଇ ତିନିପାନ ସେବନ କଲେ କୃମିଦୋଷ ନିବାରଣ ହୁଏ ।

(ଚ) ଚମ୍ପାପତ୍ରକୁ ବାଟି ତହିଁରେ ଅଳ୍ପ ସୈନ୍ଧବ ଲୁଣ ମିଶାଇ ନିଆଁରେ ବସାଇ ଅଳ୍ପ ଉଷ୍ଣକରି ଦରଜ ସ୍ଥାନରେ ଲେପିଲେ ତତ୍କ୍ଷଣାତ୍ ବେଦନା ନିବାରିତ ହୁଏ ।

## ଛତିଅନା

ଛତିଅନାକୁ ଡାକ୍ତରୀରେ ଏକାଇଟିସ ସ୍କଲାରିସ୍ ଏବଂ ସଂସ୍କୃତରେ ସପ୍ତବର୍ଣ୍ଣ, ବିଶାଳତ୍ୱକ, ଶାରଦା ଓ ବିଷମଚ୍ଛଦ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଛତିଅନା ତିକ୍ତ କଷାୟ ରସ, ସାରକ, ଅଗ୍ନିପ୍ରଦୀପକ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ ଓ ଅଗ୍ନିବର୍ଦ୍ଧକ ଏବଂ କଫ, ବାୟୁ, ବ୍ରଣ, କୃମ, କୁଷ୍ଠ, କାସ, ଶ୍ୱାସ, ରକ୍ତଦୋଷ ଓ ଗୁଳ୍ମାଦି ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଛତିଅନା ଛେଲିକୁ ଜଳରେ ବାଟି ସେହି କଲ୍କକୁ ସୋରିଷ ତେଲ ସଙ୍ଗରେ ରାନ୍ଧି ସେହି ତୈଳକୁ ଦେହରେ ଲଗାଇଲେ କଣ୍ଡୁ, ଦଦ୍ରୁ, ବିଚର୍ଚ୍ଚିକା ଓ ମଚଳା ପ୍ରଭୃତି ଚର୍ମରୋଗ ଶୀଘ୍ର ଭଲ ହୁଏ ।

(ଖ) ଛତିଅନା ପତ୍ରକୁ ଜଳରେ ବାଟି ତାହାକୁ ମୁଣ୍ଡରେ ଲଗାଇ କିଛିକ୍ଷଣ ପରେ ମୁଣ୍ଡ ଧୋଇ ଗୋଧୋଇଲେ ମୁଣ୍ଡରୁ ଉକୁଣୀ ସବୁ ବିନାଶ ହୁଅନ୍ତି ।

(ଗ) ଛତିଅନା ପତ୍ର ରସ ସଙ୍ଗରେ ଅଳ୍ପ କଲିଚୂନ ମିଶାଇ ସାତପାନ ସେବନ କଲେ ଗୁଳ୍ମ, ପ୍ଲୀହା ଓ କୃମି ପ୍ରଭୃତି ଭଲ ହୁଏ ।

(ଘ) କାଞ୍ଜିପାଣି ସଙ୍ଗରେ ଛତିଅନା ଛେଲିକୁ ବାଟି ଯାଦୁ ଉପରେ ଲେପିଲେ ଯାଦୁ ଭଲ ହୁଏ ।

(ଙ) ଛତିଅନା ପତ୍ରର ରସକୁ ଦେହରେ ଲଗାଇ କିଛିକ୍ଷଣ ପରେ ସ୍ନାନ କଲେ ଦେହରୁ ଚର୍ମଉକୁଣୀ ବିନାଶ ହୁଅନ୍ତି ।

(ଚ) ଛତିଅନା ଛେଲି ରସକୁ ଗନ୍ଧକକୁ ଘୋରି ବହୁତ ଦିନର କ୍ଷତ ଉପରେ ପ୍ରଲେପ ଦେଲେ ଅଳ୍ପଦିନ ମଧ୍ୟରେ ତାହା ଶୁଷ୍କ ହୋଇଯାଏ ।

## ଟଭାଲେମ୍ବୁ

ଟଭାଲେମ୍ବୁକୁ ଇଂରାଜୀରେ ସାଇଟସ, ଡାକ୍ତରୀରେ ଦି ସାଇଟ୍ରାନ୍ ଏବଂ ସଂସ୍କୃତରେ ମାତୁଳଙ୍ଗ, ରୁଚକ, ବୀଜପୁର ଓ ଫଳପୂରକ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଟଭାଲେମ୍ବୁ ଅମ୍ଳ ମଧୁର ରସ, ଲଘୁ, ଅଗ୍ନିଦୀପକ, ହୃଦୟଗ୍ରାହୀ ଓ କଣ୍ଠ, ଜିହ୍ୱା, ହୃଦୟାଦିର ଶୋଧନ କାରକ ଏବଂ କାସ, ଶ୍ୱାସ, ରକ୍ତପିତ୍ତ, ଅରୁଚି ଓ ପିପାସା ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଟଭାଲେମ୍ବୁର ମୂଳକୁ ଜଳରେ ବାଟି ତହିଁରେ ସମପରିମିତ ଗବ୍ୟଘୃତ ମିଶାଇ ତହିଁରୁ ଅର୍ଦ୍ଧତୋଳା ମାତ୍ରାରେ ସେବନ କଲେ ପେଟ ଭିତରର ବାୟୁବିକାର ଓ ଶୂଳ ପ୍ରଭୃତି ଶାନ୍ତି ହୁଏ ।

(ଖ) ଟଭାଲେମ୍ବୁ ରସ, କଇଥ ରସ ଓ ସପୁରୀ ରସ ସମାନ ପରିମାଣରେ ଏକତ୍ର ନିଆଁରେ ବସାଇ ଅଳ୍ପ ଉଷ୍ଣକରି କର୍ଣ୍ଣରେ ପକାଇଲେ କର୍ଣ୍ଣଶୂଳ ନିବାରିତ ହୁଏ ।

(ଗ) ଟଭାଲେମ୍ବୁ ଗଛର କେତେଗୁଡ଼ିଏ ଫୁଲ ଆଣି ଜଳରେ ଚକଟି ସେହି ଜଳକୁ ଛାଣି ତହିଁରେ ଅଳ୍ପ ମହୁ ମିଶାଇ ସାତପାନ ସେବନ କଲେ ବାତ ପିତ୍ତ ଶାନ୍ତି ହୁଏ ।

(ଘ) ରନ୍ଧା ନଡ଼ିଆ ତେଲରେ ଟଭାଲେମ୍ବୁ ରସ ଚିପୁଡ଼ି ତାହାକୁ ସର୍ବାଙ୍ଗରେ ମାଲିସ୍ କଲେ ଶୁଷ୍କବ୍ରଣ, ଚମ୍ପା, ଲୁଣା, କଣ୍ଡୁ ଓ ସର୍ବପ୍ରକାର ଚର୍ମରୋଗ ଦୂର ହୁଏ ।

(ଙ) ପାଚିଲା ଟଭାଲେମ୍ବୁ ରସରେ ଅଳ୍ପ ଚିନି ଓ ମହୁ ମିଶାଇ ତିନିପାନ ସେବନ କଲେ କାସରୋଗ ନିବାରିତ ହୁଏ ।

(ଚ) ଟଭାଲେମ୍ବୁ ଫଳ ଉପରର ଗ୍ରେପାରୁ ଏକପ୍ରକାର ତୈଳ ବାହାରେ । ସେହି ତୈଳକୁ କାଛୁ ଓ କୁଣ୍ଡିଆ ଉପରେ ଲଗାଇଲେ ତାହା ଶୀଘ୍ର ନିବାରିତ ହୁଏ ।

(ଛ) ପାଚିଲା ଟଭାଲେମ୍ବୁକୁ କିଛିଦିନ ପର୍ଯ୍ୟନ୍ତ ଅଭ୍ୟାସ କରି ଭକ୍ଷଣ କଲେ କର୍ଣ୍ଣର ବଧିରତା ବିନଷ୍ଟ ହୁଏ ।

(ଜ) ଟଭାଲେମ୍ବୁର ରସ ସଙ୍ଗରେ କର୍ପୂର ମିଶାଇ ମାଲିସ୍ କଲେ ହସ୍ତପାଦର ଜ୍ୱାଳା ଶୀଘ୍ର ନିବାରିତ ହୁଏ ।

## ତୁଳସୀ

ସଂସାରରେ ଯେତେପ୍ରକାର ଉଦ୍ଭିଦ ଅଛି, ତୁଳସୀ ସେଥିମଧ୍ୟରୁ ପ୍ରଧାନ । ଏହା କ୍ଷୁଦ୍ର ଗୁଳ୍ମଟିଏ ହେଲେ ମଧ୍ୟ ଏତେ ଉପକାରୀ ଯେ ପ୍ରତ୍ୟେକେ ଅଗଣାରେ ଏହାକୁ ଜୀଆଇ ରଖିଥାନ୍ତି । ହିନ୍ଦୁମାନେ ଏହାକୁ ଦେବତା ରୂପେ ପୂଜା କରନ୍ତି । ଶାସ୍ତ୍ର ପୁରାଣରେ ତୁଳସୀର ମାହାତ୍ମ୍ୟ ବିଶଦ ବର୍ଣ୍ଣନା କରାଯାଇଛି । ଏହାକୁ ଡାକ୍ତରୀରେ ବିଦ୍ୟାରେ ହୋଲିବାସିଲ ଏବଂ ସଂସ୍କୃତରେ ତୁଳସୀ, ସୁରମା, ଗ୍ରାମ୍ୟା, ସୁଲଭା, ବହୁମଞ୍ଜରୀ, ଗୌରୀ, ଶୂଳଘ୍ନୀ, ଦେବଦୁନ୍ଦୁଭି ଓ ଅପେତରାକ୍ଷସୀ ପ୍ରଭୃତି କହନ୍ତି ।

ତୁଳସୀ ଛଅ ପ୍ରକାର ଯଥା – ୧– କ୍ଷୁଦ୍ରପତ୍ର ତୁଳସୀ, ୨– ଗନ୍ଧ ତୁଳସୀ, ୩– ବିଲ୍ୱଗନ୍ଧ ତୁଳସୀ, ୪– କୃଷ୍ଣ ତୁଳସୀ, ୫– ଶ୍ୱେତ ତୁଳସୀ ଓ ୬– ବର୍ବରୀ ତୁଳସୀ । ଏଥିମଧ୍ୟରୁ ଶ୍ୱେତ ଓ କୃଷ୍ଣ ଦୁଇପ୍ରକାର ତୁଳସୀକୁ ସମସ୍ତେ ଭଲରୂପେ ଜାଣନ୍ତି । ଏଗୁଡ଼ିକ ବ୍ୟତୀତ ଗଙ୍ଗ ତୁଳସୀ ଓ ଗୟା ତୁଳସୀ ନାମରେ ଆଉ ଦୁଇଟି ତୁଳସୀ ଅଛି, କିନ୍ତୁ ଏ ଦିଓଟିର ଗୁଣ ସେପରି ଉତ୍କୃଷ୍ଟ ନୁହେଁ ।

### ଆୟୁର୍ବେଦୋକ୍ତ ଗୁଣ

ତୁଳସୀ କଟୁତିକ୍ତ ରସ, ଉଷ୍ଣବୀର୍ଯ୍ୟ, ରୁଚିକାରକ, ଅଗ୍ନିବର୍ଦ୍ଧକ, ପିତ୍ତଜନକ ଓ ଦାହ ଉତ୍ପାଦକ ଏବଂ ବାତଶ୍ଳେଷ୍ମ, କୃମି, ବମନ, କୁଷ୍ଠ, ରକ୍ତସ୍ରାବ, ଜୀର୍ଣ୍ଣଜ୍ୱର, ପାର୍ଶ୍ୱପୀଡ଼ା, ଭୂତାବେଶ, ରକ୍ତଦୋଷ ଓ ମୂତ୍ରକୃଚ୍ଛ୍ରାଦି ରୋଗନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପ୍ରତିଦିନ ସକାଳୁ ପାଞ୍ଚୋଟି ତୁଳସୀପତ୍ର ଗ୍ରେବାଇ ଖାଇଲେ କ୍ଷୁଧା ବୃଦ୍ଧି ହୁଏ ଓ ଆଦୌ ଜ୍ୱର ହୁଏ ନାହିଁ ।

(ଖ) କୌଣସି ଲୋକର ବୃଶ୍ଚିକ ଦଂଶନ ଯୋଗୁଁ ଅତ୍ୟନ୍ତ ଜ୍ୱାଳା ଯନ୍ତ୍ରଣା ହେଉଥିଲେ, ସଙ୍ଗେ ସଙ୍ଗେ ତୁଳସୀପତ୍ର ରସ ଦଂଶିତ ସ୍ଥାନରେ ମାଲିସ କଲେ ଶୀଘ୍ର ଉପଶମ ହୁଏ ।

(ଗ) ଏହି ରସରେ ଅଳ୍ପ ମହୁ ମିଶାଇ ଶିଶୁମାନଙ୍କୁ ସେବନ କରାଇଲେ ସେମାନଙ୍କର ଯାବତୀୟ ଶ୍ଳେଷ୍ମ ଓ କାଶ ଭଲ ହୁଏ ।

(ଘ) ଏହି ରସରେ ଗୋଲମରିଚ ଗୁଣ୍ଡା ମିଶାଇ ସାତପାନ ପର୍ଯ୍ୟନ୍ତ ସେବନ କରାଇଲେ ପୁରାତନ ଜୀର୍ଣ୍ଣଜ୍ୱର ହୋଇଥିଲେ ମଧ୍ୟ ଆରୋଗ୍ୟ ହୁଏ ।

(ଙ) ଏହି ରସରେ ଅଦାରସ ମିଶାଇ ସେବନ କରାଇଲେ ବସନ୍ତ ରୋଗର ପୀଡ଼ା କମିଯାଏ ।

(ଚ) କେବଳ ତୁଳସୀ ରସ ଦୁଇଓଳି ପନ୍ଦରଦିନ ସେବନ କଲେ ଉପଦଂଶ, ଗରମୀ (ପାରାଦୋଷ) ବିକାର ଓ ଅମ୍ଳପିତ୍ତ ରୋଗ ଭଲହୁଏ ।

(ଛ) ତୁଳସୀପତ୍ର ରସ ଓ ଘିଅ ଗୋଲମରିଚ ଗୁଣ୍ଡକୁ ସମାନ ଭାଗରେ ମିଶାଇ ପନ୍ଦରଦିନ ପର୍ଯ୍ୟନ୍ତ ସେବନ କଲେ ବାତଜ୍ୱର, ରକ୍ତବାତ, ଆମବାତ, ଗଣ୍ଠିବାତ, ଉରୁବାତ ପ୍ରଭୃତି ରୋଗ ଭଲ ହୁଏ ଏବଂ ଝାଡ଼ା ପରିଷ୍କାର ହୁଏ ।

(ଜ) ତୁଳସୀ ଗଛର ମଞ୍ଜିକୁ ଆଣି ତ୍ରିପ୍ରହର ସମୟ ଜଳରେ ଭିଜାଇ ବାଟି ତାହା ସଙ୍ଗରେ ମିଶ୍ରିଗୁଣ୍ଡ ପରୀକ୍ଷା ଦେଇ ସାତପାନ ପର୍ଯ୍ୟନ୍ତ ସେବନ କଲେ ସବୁପ୍ରକାର ମେହରୋଗ ଭଲ ହୁଏ ।

## ଦହିଦହିଆ

ଦହିଦହିଆକୁ ଉତ୍କଳରେ ଦଦୟା ଓ ଗୋରଖଦହି, ଇଂରାଜୀରେ ପରାଷ୍ଟିକ ଏବଂ ସଂସ୍କୃତରେ ଗୋରଖଦହି, ସ୍ତମ୍ଭବତୀ ଓ କାନ୍ତିବତୀ ପ୍ରଭୃତି କହନ୍ତି ।

ଆୟୁର୍ବେଦୋକ୍ତ ଗୁଣ

ଦହିଦହିଆ ମଧୁର ରସ, ସ୍ନିଗ୍ଧ, ଶୀତଳ, ବଳକାରକ, ଲଘୁ, ବୀର୍ଯ୍ୟବର୍ଦ୍ଧକ, ହୃଦ୍ୟ, ଦୀପନ, ଅଗ୍ନିବର୍ଦ୍ଧକ ଓ ରସାୟନ ଏବଂ ପିତ୍ତ, ବାତ, ଅଜୀର୍ଣ୍ଣ, ଜ୍ୱର, ବ୍ରଣ, ବିଷଦୋଷ, ମେହ, ପ୍ରମେହ ଓ ଧାତୁରୋଗ ବିନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଦହିଦହିଆ ପତ୍ର ସଙ୍ଗେ ଅଳ୍ପ ମିଶ୍ରିଗୁଣ୍ଡା ପ୍ରକ୍ଷେପ ଦେଇ ସାତଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କଲେ ଧାତୁ ପଡୁଥିଲେ ହଠାତ୍ ଭଲ ହୁଏ ଏବଂ ବହୁତ ଦିନର ଅସାଧ୍ୟ ମେହରୋଗ ମଧ୍ୟ ଅତି ଆଶ୍ଚର୍ଯ୍ୟ ଭାବରେ ଶୀଘ୍ର ଭଲ ହୁଏ ।

(ଖ) ଦହିଦହିଆ ଗଛର ସମସ୍ତ ଅଂଶକୁ ଆଣି ଜଳ ସଙ୍ଗରେ ବାଟି ପିଇଲେ ସମସ୍ତ ପ୍ରକାର ମେହ ପ୍ରମେହ ପ୍ରଭୃତି ଯାବତୀୟ ପ୍ରକାର ଧାତୁରୋଗମାନ ସହଜରେ ଭଲ ହୁଏ ।

(ଗ) ଦହିଦହିଆ ଗଛ ଓ ପତ୍ର ସଙ୍ଗେ ଗୋଲମରିଚ ମିଶାଇ ଜଳରେ ବାଟି ପିଲାମାନଙ୍କୁ ସେବନ କରାଇଲେ ସେମାନଙ୍କ ଦେହର ସବୁପ୍ରକାର ରୋଗ ଭଲ ହୁଏ ।

(ଘ) ଦହିଦହିଆ ମୂଳ ୨ଭରି ଓ ଗୋଲମରିଚ ୧ଭରି ଏକତ୍ର ଜଳରେ ବାଟି ତହିଁରେ ଦୁଇରତି ଶ୍ରୀକର୍ପୂର ମିଶାଇ ହଇଜା ରୋଗୀକି ପିଆଇଲେ ଶୀଘ୍ର ଭଲ ହୁଏ ।



## ଦାସକେରଣ୍ଡା

ଦାସକେରେଣ୍ଡାକୁ ଡାକ୍ତରୀରେ ବରଲେରିଆ କ୍ରଷ୍ଟାଟା ଏବଂ ସଂସ୍କୃତରେ ଶ୍ୱେତପୁଷ୍ପ, ସୈରେୟକ, ବଟସାରିକା, ସହଚରା, ନାସୀ, ଝାଣ୍ଟ ଓ ଝଣ୍ଟୀ ପ୍ରଭୃତି କୁହାଯାଏ ।

ଆୟୁର୍ବେଦୋକ୍ତ ଗୁଣ

ଦାସକେରେଣ୍ଡା ଅଳ୍ପ ଅମ୍ଳଯୁକ୍ତ, ତିକ୍ତମଧୁର ରସ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ ଓ କେଶରଞ୍ଜକ ଏବଂ ବାୟୁ, କଫ, କଣ୍ଡୁ, କୁଷ୍ଠ, ରକ୍ତଦୋଷ, କ୍ଷତ, ବ୍ରଣ ଓ ବିଷନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଦେହର କୌଣସି ସ୍ଥାନ ହଠାତ୍ କାଟି ହୋଇଗଲେ ବିଳମ୍ବ ନ କରି ଦାସକେରେଣ୍ଡା ପତ୍ରକୁ ଆଣି ଛେଚି ତାହାର ରସକୁ ସେହି କଟାଘାଆରେ ଦେଇ ପଟି ବାନ୍ଧିଦେଲେ ସେ ସ୍ଥାନରେ ତିଳେମାତ୍ର ଦରଜ କିମ୍ବା ବ୍ୟଥା ପ୍ରଭୃତି କିଛି ରହେ ନାହିଁ ଓ ଅଳ୍ପ ଦିନରେ କ୍ଷତ ଶୁଷ୍କ ହୁଏ ।

(ଖ) ଦାସକେରେଣ୍ଡା ପତ୍ରକୁ ଛେଚି ଗରମ କରି କଟା ଘାଆରେ ଦେଇ ତା ଉପରେ କନାପଟି ବାନ୍ଧିଦେଲେ କଟାଘା ଶୀଘ୍ର ଶୁଖିଯାଏ ।

(ଗ) ପ୍ରତିଦିନ ସକାଳୁ ଦାସକେରେଣ୍ଡା ପତ୍ର ରସ ସଙ୍ଗରେ ଅଳ୍ପ ମିଶ୍ରିଗୁଣ୍ଡା ମିଶାଇ ସାତପାନ ସେବନ କଲେ କୃମି, କଫ, କଣ୍ଡୁ, ବାୟୁ, କୁଷ୍ଠ ଓ ସର୍ବପ୍ରକାର କ୍ଷତରୋଗ ବିନାଶ ପାଏ ।

# ଢୁଢୁରା (ଧାତୁରା)

ଧାତୁରାକୁ ଉତ୍କଳରେ ଢୁଢୁରା, ଡାକ୍ତରୀରେ ଧାତୁରା ଫୁସ୍‌ଟୟାସା ଏବଂ ସଂସ୍କୃତରେ ଧୂସ୍ତୁର, ଧୂର୍ତ୍ତ, ଉନ୍ମତ୍ତ, କନାକାହ୍ୱୟ, ଦେବିକା, କିତବ, ତୁରା, ମହାମୋହୀ, ଶିବପ୍ରିୟା, ମାତୁଳ, ମଦକ ଓ କାନକବାଚକ ପ୍ରଭୃତି କୁହାଯାଏ ।

ଧାତୁରା ଶୁକ୍ଳ, କୃଷ୍ଣ ଦୁଇପ୍ରକାର । ଶୁକ୍ଳର ଗଛ ଓ ଫୁଲ ଧଳା । ମାତ୍ର କୃଷ୍ଣର ଗଛ ଓ ଫୁଲ ଲାଲମିଶା କଳାବର୍ଣ୍ଣ ଦେଖାଯାଏ । ଶୁକ୍ଳବର୍ଣ୍ଣ ଧାତୁରା ଅପେକ୍ଷା କୃଷ୍ଣବର୍ଣ୍ଣ ଧାତୁରା ଅଧିକ ଗୁଣକାରକ ।

### ଆୟୁର୍ବେଦୋକ୍ତ ଗୁଣ

ଢୁଢୁରା ଉଷ୍ଣବୀର୍ଯ୍ୟ, ମତ୍ତତାକାରକ, ବର୍ଣ୍ଣପ୍ରସାଦକ, ଅଗ୍ନିବର୍ଦ୍ଧକ, ବାୟୁଜନକ, ନିଦ୍ରାକାରକ, ଗୁରୁ, ମୂର୍ଚ୍ଛାଜନକ, ଅଗ୍ନିମାନ୍ଦ୍ୟକାରକ, ଭ୍ରମକାରକ, ପ୍ରଳାପକାରକ, କାନ୍ତିଜନକ, ଗର୍ଭଦାୟକ ଓ ପ୍ରସବକାରକ ଏବଂ ଜ୍ୱର, ବ୍ରଣ, କଣ୍ଡୁ, କୁଷ୍ଠ, କୃମି, ବିଷଦୋଷ, ଚର୍ମରୋଗ, ପିତ୍ତ, ଶ୍ଳେଷ୍ମ, ଶ୍ୱାସ ଓ ବାତବେଦନା ପ୍ରଭୃତି ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କଳାଢୁଢୁରା ପତ୍ରର ରସ ସଙ୍ଗରେ ସମପରିମିତ ରାଶିତେଲ ମିଶାଇ ନିଆଁରେ ବସାଇ ତୈଳ ରାନ୍ଧି ସେହି ତୈଳ ଅଳ୍ପ ଉଷ୍ଣ ଥାଉଁ ଥାଉଁ କାନରେ ପକାଇଲେ କର୍ଣ୍ଣରୁ ପୂଯବୁହା, କର୍ଣ୍ଣପାକ, କର୍ଣ୍ଣ ଭିତର ବଥ, କର୍ଣ୍ଣଶୂଳ, କର୍ଣ୍ଣନାଦ, କର୍ଣ୍ଣକୀଟ ଓ କର୍ଣ୍ଣବଧିରତା ପ୍ରଭୃତି ଯାବତୀୟ କର୍ଣ୍ଣରୋଗ ଭଲ ହୁଏ ।

(ଖ) କଳା ଢୁଢୁରା ପତ୍ରକୁ ଖରାରେ ଶୁଖାଇ ପିକା କରି ବଳି ତହିଁରେ ନିଆଁ ଲଗାଇ ତାହାର ଧୂମ ଗ୍ରହଣ କଲେ ଅସାଧ୍ୟ ଶ୍ୱାସ ରୋଗର ଯନ୍ତ୍ରଣା ଶୀଘ୍ର ଦୂର ହୁଏ । ଏହାଦ୍ୱାରା ମଧ୍ୟ ବହୁଦିନର ଯାବତୀୟ ଶ୍ୱାସ ଓ କାସ ଭଲହୁଏ ।

(ଗ) ରାଶିତେଲ ଓ କଳାଢୁଢୁରା ପତ୍ର ରସକୁ ତୈଳପାକ କରି ସେହି ତୈଳକୁ ପାଦରେ ମାଲିସ କଲେ ଗୋଡ଼ର ଘୋଳାବିନ୍ଧା ଶୀଘ୍ର ଭଲହୁଏ ।

(ଘ) କଳାଢୁଢୁରା ପତ୍ର ରସ ସଙ୍ଗରେ କିଞ୍ଚିତ୍ ଲେମ୍ବୁରସ ମିଶାଇ ମୁଣ୍ଡରେ ଲଗାଇଲେ କେଶର ଅକାଳ ପକ୍ୱତା ଦୂର ହୁଏ ।

(ଙ) କଳାଢୁଢୁରା ଫୁଲର ଚୂର୍ଣ୍ଣ ଏକରତି ସଙ୍ଗେ ଅଳ୍ପ ମହ ମିଶାଇ ଶୁଦ୍ଧସ୍ନାନ ଦିନଠାରୁ ସାତଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କରାଇଲେ ବନ୍ଧ୍ୟା ନାରୀର ଗର୍ଭୋଦୟ ହୁଏ ।

# ଦୁବ (ଦୁର୍ବା)

ଦୁର୍ବାକୁ ଉତ୍କଳରେ ଦୂବ, ଡାକ୍ତରୀରେ ଆଗ୍ରୋଷ୍ଟିସ୍ ସାଇରାସୁରି ସିଡିସ୍ ଏବଂ ସଂସ୍କୃତରେ ଶତପର୍ବିକା, ସହସ୍ରବୀର୍ଯ୍ୟ, ଭାର୍ଗବୀ, ରୁହା, ଅନନ୍ତା, ଗୁଣା, ନନ୍ଦା, ମହାବରା, ହରିତାଳିକା, ତିକ୍ତାପର୍ବା, ଦୁର୍ମରା, ବହୁବୀର୍ଯ୍ୟା, ହରିତାଳୀ ଓ କଚ୍ଛରୁଆ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ଦୁର୍ବା କଷାୟ, ମଧୁରରସ, ଶୀତବୀର୍ଯ୍ୟ, ରକ୍ତରୋଧକ ଓ ତୃପ୍ତିଜନକ ଏବଂ କଫ, ପିତ୍ତ, ତୃଷ୍ଣା, ଶୀତପିତ୍ତ, ଅରୁଚି, ବମନ, ଦାହ, ରକ୍ତଦୋଷ, ମୂର୍ଚ୍ଛା, ଶ୍ଳୋଷ୍ମା, ବିସର୍ପ, ଭୂତାବେଶ, ମୂତ୍ର, ଚର୍ମରୋଗ ଓ ନାସାକ୍ଷତ ଆଦି ରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କେତେଗୁଡ଼ିଏ ଦୂବ ଆଣି ଛେଚି ରସ ବାହାର କରି ନାକରେ ପକାଇଲେ ନାକରୁ ରକ୍ତ ପଡ଼ିବା ଭଲ ହୁଏ ।

(ଖ) କୌଣସି ଅସ୍ତ୍ରଦ୍ୱାରା ଦେହର କୌଣସି ସ୍ଥାନ କାଟି ହୋଇଗଲେ ସେହି ସ୍ଥାନରେ ଦୂବ ରସକୁ ଦେଇ ଖଣ୍ଡେ କନାପଟି ବାନ୍ଧିଦେଲେ ରକ୍ତ ବୋହିବା ବନ୍ଦ ହୋଇ ଶୀଘ୍ର ଦରଜ କମିଯାଏ ।

(ଗ) କେତେଗୁଡ଼ିଏ ଦୂବକୁ ଆଣି ଦରକୁଟା କରି ଜଳରେ ସିଝାଇ ସେହି ସିଝାଜଳ ସଙ୍ଗରେ ଅଳ୍ପ ଚିନି ପରାକ୍ଷା ଦେଇ ପାନ କଲେ ମୂତ୍ରରୋଧ ହୋଇଥିଲେ ଶୀଘ୍ର ପ୍ରସ୍ରାବ ହୁଏ ।

(ଘ) ଦୂବ ରସ ସଙ୍ଗରେ ଅଳ୍ପ ଚିନି ମିଶାଇ ପିଲାମାନଙ୍କୁ ଦୁଇ ତିନିପାନ ସେବନ କରାଇଲେ ସେମାନଙ୍କର ବାନ୍ତି ଭଲ ହୁଏ ।

(ଙ) ରାଶିତେଲ ସଙ୍ଗରେ ଅଳ୍ପ ଦୂବରସ ମିଶାଇ ନିଆଁରେ ବସାଇ ଭଲରୂପେ ତୈଳ ରାନ୍ଧି ସେହି ତୈଳକୁ ଲଗାଇଲେ କାଛୁ, କୁଣ୍ଡିଆ, ମଚଲା, ବିଇନ୍ଥି, ଚମଦଳା ଓ ନୂତନ ଏବଂ ପୁରାତନ ପ୍ରଭୃତି ଘାଆମାନ ଶୀଘ୍ର ଭଲ ହୁଏ ।

# ନିମ୍ବ

ନିମ୍ବ ଗଛକୁ ସମସ୍ତେ ଚିହ୍ନନ୍ତି । ଏହାକୁ ଡାକ୍ତରୀ ବିଦ୍ୟାରେ ମେଲିଓ ଅଜାଡ଼ିରେ ଲଟା ଓ ସଂସ୍କୃତରେ ତିକ୍ତକ, ପିଚୁମର୍ଦ୍ଦ, ପାରିଭଦ୍ର, ପିଚୁମନ୍ଦ, ଅରିଷ୍ଟ ଓ ହିଙ୍ଗୁ ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ନିମ୍ବ ଶୀତବୀର୍ଯ୍ୟ, ଧାରକ, ଲଘୁ, କଟୁବିପାକ, ବାୟୁନାଶକ, ଅଗ୍ନିମାନ୍ଦ୍ୟ କାରକ, ତିକ୍ତରସ ଓ ଆହୃଦ୍ୟ ଏବଂ ବ୍ରଣ, ବାୟୁ, ଶ୍ଳେଷ୍ମ, ପିତ୍ତ, ଅରୁଚି, ଅର୍ଶ, ବମନ, ଜ୍ୱର, ତୃଷା, ବିସର୍ପ, କୁଷ୍ଠ, କାଶ, କୃମି, ଦଦ୍ରୁ ଓ କଣ୍ଡୁ ପ୍ରଭୃତି ଚର୍ମରୋଗ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ନିମ୍ବପତ୍ରକୁ ଖରାରେ ଶୁଖାଇ, କୁଟି, ଚୂର୍ଣ୍ଣକରି ସେହି ଚୂର୍ଣ୍ଣକୁ ଘା'ମାନଙ୍କରେ ଦେଲେ ସବୁ ପ୍ରକାର ଘାଆ ଶୀଘ୍ର ଶୁଖିଯାଏ ।

(ଖ) ନିମ୍ବ ଗଛର ଫୁଲ, ଫଳ, ପତ୍ର, ଛେଲି ଓ ମୂଳ ଏହ ପଞ୍ଚାଙ୍ଗକୁ ଏକତ୍ର କୁଟି ଉତ୍ତମରୂପେ ଚୂର୍ଣ୍ଣ କରିବ । ଏହି ଚୂର୍ଣ୍ଣରୁ ଅଳ୍ପ ପରିମାଣରେ ନେଇ ଜଳ ସହିତରେ ଗୋଳି ପ୍ରତ୍ୟେହ ଦୁଇବେଳା ସେବନ କଲେ ଅଳ୍ପ ଦିନ ମଧ୍ୟରେ ଶର୍ଦ୍ଦି, କାଶ, ଅଜୀର୍ଣ୍ଣ, କୃମି, ଜର, ବ୍ରଣ, ଦଦ୍ରୁ, ବିଚର୍ଚ୍ଚିକା ଓ କଣ୍ଡୁ ପ୍ରଭୃତି ରୋଗମାନ ଭଲ ହୋଇଯାଏ ।

(ଗ) ନିମ୍ବଗଛର ପଞ୍ଚାଙ୍ଗକୁ ଏକତ୍ର ଜଳ ସଙ୍ଗରେ ସିଝାଇ ସେହି କ୍ୱାଥ ସଙ୍ଗରେ ଅଳ୍ପ ମହୁ ମିଶାଇ ସେବନ କଲେ ନୂତନ ଓ ପୁରାତନ ଯାବତୀୟ ଜ୍ୱର ଶୀଘ୍ର ଭଲ ହୁଏ ।

(ଘ) ଶ୍ୱେତକୁଷ୍ଠ ବା ଧବଳ ଛଉ, ରକ୍ତ ଛଉ, କାଳବାତ, ଅକାଟ ଛଉ (ଯେଉଁ ଛଉକୁ ଚିମୁଟିଲେ କାଟେ ନାହିଁ) କିମ୍ବା ସେହି ଛଉ ଉପରେ ଗୋଟିଏ ହୋଇ ରୋମ ରହୁ ନଥାଏ, ତେବେ ସେହି ନିମ୍ବ ତୈଳକୁ ଅଳ୍ପ ଅଳ୍ପ ନେଇ ଏକମାସ ପର୍ଯ୍ୟନ୍ତ ଦୁଇଥର ଲେଖାଏଁ ମାଲିସ କଲେ ଏ ସବୁ ଭଲ ହୋଇଯାଏ ।

(ଙ) ନିମ୍ବ ତୈଳକୁ ଅଳ୍ପ ପ୍ରତ୍ୟହ ନସ୍ୟ ରୂପେ ଗ୍ରହଣପୂର୍ବକ ଦୁଗ୍ଧପାନ କଲେ ଶୁକ୍ଳକେଶ କୃଷ୍ଣବର୍ଣ୍ଣ ହୁଏ ।

(ଚ) କାଛୁ, କୁଣ୍ଡିଆ, ମଚ୍‌ଳା, ଯାଦୁ, ଚମଦଳା, ବିଇଛି ଓ ବିଚର୍ଚ୍ଚିକା ପ୍ରଭୃତି ଚର୍ମରୋଗମାନଙ୍କର ନିମ୍ବତୈଳ ଲଗାଇଲେ ଶୀଘ୍ର ଭଲ ହୁଏ ।

## ପ୍ରସାରିଣୀ

ପ୍ରସାଣିଣୀକୁ ଉତ୍କଳରେ ପସାରୁଣୀ, ଡାକ୍ତରୀରେ ପେଡ଼େରିଆଫେଯେଟିଡା ଏବଂ ସଂସ୍କୃତରେ ପ୍ରସାରିଣୀ, ରାଜବଳା, ଭଦ୍ରପର୍ଣ୍ଣୀ, ପ୍ରତାପିନୀ, ସରଣୀ, ଭଦ୍ରା, ବଳା ଓ କଟମ୍ବରା ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ପ୍ରସାରିଣୀ ତିକ୍ତରସ, ଗୁରୁପାକ, ସାରକ, ଉଷ୍ଣବୀର୍ଯ୍ୟ, ବଳକର, ଶୁକ୍ରବର୍ଦ୍ଧକ, ଭଗ୍ନସଂଯୋଜକ, ବେଦନା ନାଶକ, ବାତ ଓ କଫ ନିର୍ମୂଳକ ଏବଂ ଶୋଥ, ଅର୍ଶ ଓ ବାତରକ୍ତ ରୋଗର ଉପକାରକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପ୍ରସାରିଣୀ ପତ୍ର ରସ ସଙ୍ଗେ କିଛି ମହୁ ପରୀକ୍ଷା ଦେଇ ତିନିପାନ ସେବନ କଲେ ନାଳରକ୍ତ ଝାଡ଼ା ଭଲ ହୁଏ ।

(ଖ) ପ୍ରସାରିଣୀ ଲତା, ମୂଳ ଓ ପତ୍ର ଏହି ତିନିକି ସମପରିମାଣରେ ଏକତ୍ର ବାଟି ଗବ୍ୟଦୁଗ୍ଧ ସଙ୍ଗେ ମିଶାଇ ପ୍ରତ୍ୟହ ଦୁଇବାର ସେବନ କଲେ ଅତ୍ୟନ୍ତ ଭାବରେ ବଳବୀର୍ଯ୍ୟ ବୃଦ୍ଧି ହୁଏ । ଏହି ଉପାୟ ଦ୍ୱାରା ମଧ୍ୟ ସବୁଦିନେ ଶରୀର ନୀରୋଗ ରହେ ।

(ଗ) ପ୍ରସାରିଣୀ ପତ୍ରରୁ କିଛି ଆଣି ଉଷୁନା ଚାଉଳ ସଙ୍ଗରେ ବାଟି ଜାଉ କରି ଖାଇଲେ ଆମାଶୟ, ଅତିସାର, ଗ୍ରହଣୀ ଓ ଯାବତୀୟ ଝାଡ଼ା ଭଲ ହୋଇଯାଏ ।

(ଘ) ପ୍ରସାରିଣୀ ମୂଳକୁ ଆଣି ଜଳସଙ୍ଗେ ସିଝାଇ ସେହି ସିଝା ଜଳ ସଙ୍ଗେ ଅଳ୍ପ ମିଶ୍ରିଗୁଣ୍ଡା ମିଶାଇ ଚାରି ପାଞ୍ଚ ପାନ ସେବନ କଲେ ଅମ୍ଳଶୂଳ, ଆମଝାଡ଼ା ଓ ବାୟୁବିକାର ପ୍ରଭୃତି ପେଟର ଯାବତୀୟ ଅମାର୍ଗ ଭଲହୁଏ ।

(ଙ) ଅରୁଆଚାଉଳ ସଙ୍ଗେ ପ୍ରସାରିଣୀ ପତ୍ର ଓ ଲତା ମିଶାଇ ବାଟି ଜାଉ କରି ୩/୪ ଥର ପର୍ଯ୍ୟନ୍ତ ପ୍ରସବ କରିଥିବା ଗାଈକି ଖାଇବାକୁ ଦେଲେ ସେ ଗାଈର ବହୁତ କ୍ଷୀର ହୁଏ ।

## ପାତାଳ ଗରୁଡ଼ ଗଛ

ପାତାଳଗରୁଡ଼ ଗଛକୁ ବଙ୍ଗଳାରେ ଶିଳିନ୍ଦି, ଇଂରାଜୀରେ କୋଗେନୋରିଆ ଭଲ୍‌ଗିରିସ୍ ଏବଂ ସଂସ୍କୃତରେ ଛିଳିହିଣ୍ଟ, ମହାମୂଳ ବତ୍ସାଦନୀ, ଗାରୁଡ଼ୀ, ଦୀର୍ଘକାନ୍ତା, ମହାବଳା, ଦୀର୍ଘବଲ୍ଲୀ ଓ ଦୃଢ଼ଲତା ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ପାତାଳଗରୁଡ଼ ମଧୁର ରସ, ରୁଚିକର, ସନ୍ତର୍ପଣକାରକ ଓ ଶୁକ୍ରବର୍ଦ୍ଧକ ଏବଂ କଫ, ପିତ୍ତ, ବାୟୁ, ଦାହ, ବିଷଦୋଷ, ରକ୍ତଦୋଷ ଓ ସର୍ପବିଷ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପାତାଳଗରୁଡ଼ ଗଛ ଏବଂ ପତ୍ରକୁ ଆଣି ତାହା ସଙ୍ଗେ ତିନି ଚାରି ଗୋଟି ଗୋଲମରିଚ ମିଶାଇ ଏକତ୍ର ଜଳରେ ବାଟି ଘଣ୍ଟାକ ମଧ୍ୟରେ ତିନିଥର ପର୍ଯ୍ୟନ୍ତ ପିଆଇଲେ ପ୍ରାଣୀ ଦେହରୁ ଯାବତୀୟ ପ୍ରକାର ସର୍ପବିଷ ବିନାଶ ହୁଏ ।

(ଖ) ପାତାଳଗରୁଡ଼ ଗଛର ପତ୍ରକୁ ଆଣି ଛେଚି ତହିଁରୁ ରସ ବାହର କରି ସେହି ରସ ସଙ୍ଗରେ ଅଳ୍ପ ମହୁ ମିଶାଇ ଦୁଇତିନି ଥର ସେବନ କଲେ କଫ, ବାତ, ପିତ୍ତ ଓ ଯାବତୀୟ ରୋଗ ଭଲ ହୁଏ ।

(ଗ) କୌଣସି ବ୍ୟକ୍ତି ଦେହରେ ଉପଦଂଶ, ଗରମୀ ପ୍ରଭୃତି ରୋଗ ହୋଇଥିଲେ କେତେଗୁଡ଼ିଏ ପାତାଳଗରୁଡ଼ ପତ୍ରକୁ ଆଣି ଛେଚି ତହିଁରୁ ରସ ବାହାର କରି ଅଶ୍ୱଗନ୍ଧା ଚୂର୍ଣ୍ଣ ଓ ମହୁ ମିଶାଇ ସାତପାନ ସେବନ କଲେ ଦେହରେ ଫଳି ଯାଇଥିବା ଚକା ଚକା ଦାଗ ଓ ଯାବତୀୟ ରକ୍ତବିକୃତି ଭଲ ହୁଏ ।

(ଘ) ପାତାଳଗରୁଡ଼ ଗଛର ପତ୍ରାଦି ସମସ୍ତ ଅଂଶକୁ ଆଣି ଜଳ ସଙ୍ଗରେ ବାଟି ତହିଁରେ ଗୋଲମରିଚ ଗୁଣ୍ଡା ମିଶାଇ ତିନିପାନ ସେବନ କଲେ ଅଜୀର୍ଣ୍ଣ, ବାୟୁ, ଗୁଳ୍ମ, ପ୍ଲୀହା ଓ ଯକୃତ୍ ଆଦି ଯାବତୀୟ ଉଦର ରୋଗମାନ ଶୀଘ୍ର ଭଲ ହୁଏ ।

## ପାନ (ତାମ୍ବୁଳ)

ତାମ୍ବୁଳକୁ ଉତ୍କଳରେ ପାନ, ଡାକ୍ତରୀରେ ପିପେଇ ବିଟ୍ଲ ଏବଂ ସଂସ୍କୃତରେ ନାଗବଲ୍ଲୀ, ପର୍ଣ୍ଣ, ତାମ୍ବୁଳୀ, ବର୍ଣ୍ଣଲତା, ସପ୍ତଶିର, ସପ୍ତଲତା, ଭୁଜ୍ୟଲତା, ଫଣୀବଲ୍ଲୀ, ତାମ୍ବୁଳବଣୀକା, ପର୍ଣ୍ଣବଲ୍ଲୀ ଓ ଗୃହାଶୟ କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ତାମ୍ବୁଳ କଟୁତିକ୍ତ କଷାୟ ରସ, ଲଘୁ, ଉଷ୍ଣବୀର୍ଯ୍ୟ, ରୁକ୍ଷ, କ୍ଷାରଗୁଣ ବିଶିଷ୍ଟ, ରୁଚିକର, ରକ୍ତପିତ୍ତ କାରକ, ମଳଭେଦକ, ବଳବର୍ଦ୍ଧକ, ମୁଖ ଶୁଦ୍ଧିକାରକ, ସୌଗନ୍ଧଜନକ ଓ ରସନେନ୍ଦ୍ରିୟର ଶୁଦ୍ଧିକାରକ ଏବଂ ବାୟୁ, ଶ୍ଲେଷ୍ମା, ଶାନ୍ତି ଓ ମୁଖଦୁର୍ଗନ୍ଧ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପାନପତ୍ରକୁ ଛେଚି ତହିଁରୁ ରସ ବାହାର କରି ସେହି ରସକୁ ନିଆଁରେ ଅଳ୍ପ ଉଷ୍ଣ କରି ସେଥିରେ ଅଳ୍ପ ମହୁ ମିଶାଇ ତିନିପାନ ସେବନ କଲେ ସ୍ୱରଭଙ୍ଗ ରୋଗ ବିନାଶ ହୁଏ ।

(ଖ) ପାନରସ ଓ ସୋରିଷତେଲ ଏ ଦୁହିଁଙ୍କି ଏକତ୍ର ମିଶାଇ ନିଆଁରେ ଉଷୁମ କରି ପିଲାଙ୍କ ଦେହରେ ମାଲିସ କଲେ ସେମାନଙ୍କ ଦେହରୁ ଶର୍ଦ୍ଦି ଛାଡ଼ିଯାଏ ।

(ଗ) ପାନପତ୍ର ରସ ସଙ୍ଗରେ ଅଦାରସ ମିଶାଇ ୨/୩ ପାନ ସେବନ କଲେ କାସ, ଶ୍ୱାସ, ଶର୍ଦ୍ଦି ଓ କଣ୍ଠ ପଡ଼ିବା ଶୀଘ୍ର ଭଲ ହୁଏ ।

(ଘ) ପାନପତ୍ର ଉପରେ ଗବ୍ୟଘୃତ ମାଲିସ୍ କରି ସେହି ପାନପତ୍ରକୁ ନିଆଁରେ ଅଳ୍ପ ସେକି ନାଡ଼ା ଉପରେ ଦେଇ କନା ପଟି ବାନ୍ଧିଦେଲେ ନାଡ଼ା ଗଡୁଥିଲେ ତାହା ଆଉ ନ ଗଡ଼ି କ୍ରମେ କ୍ରମେ ଶୁଷ୍କ ହୋଇଯାଏ ।

(ଙ) ଦେହର କୌଣସି ସ୍ଥାନ କାଟି ହୋଇଗଲେ ତତ୍କ୍ଷଣାତ୍ ପାନପତ୍ର ଉପରେ ଗବ୍ୟଘୃତ ଲଗାଇ ସେହି ପାନକୁ ସେକି ଅଳ୍ପ ଉଷ୍ଣ କରି ତାହା କଟାସ୍ଥାନ ଉପରେ ଦେଇ ତା ଉପରେ ଗୋଟିଏ କନାର ପଟି ବାନ୍ଧିଦେଲେ ସେ କଟାଘା ଶୀଘ୍ର ଶୁଖିଯାଏ ।

(ଚ) ପାନରସକୁ ନାକରେ ପକାଇଲେ ପୀନସ ରୋଗ ଭଲ ହୁଏ ।

(ଛ) ପାନରସ ସଙ୍ଗରେ ମରିଚ ଚୂର୍ଣ୍ଣ ମିଶାଇ ସାତଦିନ ସେବନ କଲେ ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ରୋଗ ଭଲ ହୁଏ ।

(ଜ) ଯେ କୌଣସି ତୈଳ ରାନ୍ଧିବା ସମୟରେ ପ୍ରଥମେ ସେହି ତୈଳରେ ପାନପତ୍ର ପକାଇଲେ ତୈଳ ବିଶୁଦ୍ଧ ହୁଏ ।

(ଝ) ପାନରସ ପ୍ରତ୍ୟହ ସେବନ କଲେ ବାତ, କୃମି, ଶ୍ଳେଷ୍ମ, ଦୁର୍ଗନ୍ଧ, କଫ ଓ ଶୋଥ ପ୍ରଭୃତି ରୋଗ ଶରୀରରେ ପ୍ରବେଶ କରିପାରେ ନାହିଁ ।

## ପାଲଧୂଆ

ପାଲଧୂଆ ଗଛକୁ ଡାକ୍ତରୀରେ ଏରିଥ୍ରୀନା ଇଣ୍ଡିକା, ଇଂରେଜୀରେ ଦି ଇଣ୍ଡିଆନ୍ କୋରାଲଟ୍ରୀ ଏବଂ ସଂସ୍କୃତରେ ରକ୍ତକେଶର, ବହୁପୁଷ୍ପ, କୃମିଶତ୍ରୁ, ରକ୍ତପୁଷ୍ପକ ଓ ପାରିଭଦ୍ର ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ପାଲଧୂଆ କଟୁ, ତିକ୍ତରସ, ଅଗ୍ନିବର୍ଦ୍ଧକ, ଉଷ୍ଣବୀର୍ଯ୍ୟ, ପଥ୍ୟ ଓ ବାତଶ୍ଳେଷ୍ମ ନାଶକ ଏବଂ ଅରୁଚି, ପିତ୍ତବିକାର, ଶୋଥ, କୃମି ଓ କର୍ଣ୍ଣରୋଗରେ ଉପକାରକ ଅଟେ । ପାଲଧୂଆ ପତ୍ର ବାହ୍ୟ ପ୍ରୟୋଗରେ ଆଣ୍ଠୁଗଣ୍ଠି ପ୍ରଭୃତି ସନ୍ଧିସ୍ଥାନର ପୀଡ଼ା, ବାତଦୋଷ, ଚକ୍ଷୁପୀଡ଼ା ଓ ଆମ ବିକୃତି ନାଶକ । ପାଲଧୂଆ ଫୁଲ ପିତ୍ତରୋଗ ଓ କର୍ଣ୍ଣରୋଗର ବିନାଶ କାରକ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପାଲଧୂଆ ପତ୍ରରେ କଜ୍ଜଳ ପାରି ଚକ୍ଷୁରେ ଘେନିଲେ ଯାବତୀୟ ପ୍ରକାର ଚକ୍ଷୁରୋଗ ଦୂର ହୁଏ ।

(ଖ) ପାଲଧୂଆ ପତ୍ର ରସ ସଙ୍ଗରେ ଅଳ୍ପ କଲିଚୂନ ମିଶାଇ ତିନିପାନ ସେବନ କଲେ ପିଲା ବଡ଼ ସମସ୍ତଙ୍କର ଉଦରସ୍ଥ କୃମିମାନେ ବିନାଶ ହୁଅନ୍ତି ।

(ଗ) ପାଲଧୂଆ ଗଛର ଫୁଲକୁ ଆଣି ଘିଅରେ ଭାଜି କରି ତହିଁରୁ ଅଳ୍ପ ଭକ୍ଷଣ କଲେ କୃମି, କଣ୍ଡୁ, ବିଚର୍ଚ୍ଚିକା ଓ ବ୍ରଣ ପ୍ରଭୃତି ରୋଗ ଶୀଘ୍ର ଭଲ ହୁଏ । ପ୍ରକାଶ ଥାଉକି ଏହା ଅତ୍ୟନ୍ତ ଗରମ ଅଟେ । ତେଣୁ ଏଥିରୁ ୨/୩ବାରରୁ ଅଧିକ ସେବନ କରିବା ନିଷେଧ ।

(ଘ) ପାଲଧୂଆ ପତ୍ରକୁ ଜଳରେ ସିଝାଇ ସେହି ଜଳ ଅଳ୍ପ ଉଷ୍ଣ ଥାଉଁ ଥାଉଁ ଆଣ୍ଠୁ ପ୍ରଭୃତି ବାତଜନିତ ପୀଡ଼ା ସ୍ଥାନରେ ସେକ ଦେଲେ ତାହା ଶୀଘ୍ର ଦୂର ହୁଏ ।

(ଙ) ପାଳଧୂଆ ପତ୍ରରସ ସଙ୍ଗରେ ଅଳ୍ପ ମରିଚଚୂର୍ଣ୍ଣ ମିଶାଇ ସାତପାନ ସେବନ କଲେ ସମସ୍ତ ପ୍ରକାର ପିତ୍ତ ଶାନ୍ତି ହୁଏ ଏବଂ ପିତ୍ତ ବିକାରରୁ ଦେହରେ ଚକା ଚକା ହୋଇ ଫଳି ଯାଉଥିଲେ ମଧ୍ୟ ଭଲ ହୁଏ ।

# ପୋକଶୁଙ୍ଘା

ପୋକଶୁଙ୍ଘା ଗଛକୁ ଲାଟିନରେ ଟ୍ରୁମାନଫୋରାଟ ଏବଂ ସଂସ୍କୃତରେ କୁକୁନ୍ଦର, ମୃଦୁଚ୍ଛଦ ଓ ପୀତପୁଷ୍ପ ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

ପୋକଶୁଙ୍ଘା କଟୁତିକ୍ତ ରସ ଏବଂ ଜ୍ୱର, ରକ୍ତଦୋଷ, କଫ, ରକ୍ତପିତ୍ତ, ଅତିସାର, ତୃଷା ଓ ଦାହ ନିବାରକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପୋକଶୁଙ୍ଘା ଗଛର କଞ୍ଚାମୂଳକୁ ଆଣି କଳରେ ଜାକିଲେ ହଠାତ୍ ପିପାସା (ଶୋଷ) ନିବାରିତ ହୁଏ ।

(ଖ) ପୋକଶୁଙ୍ଘା ମୂଳ, ବାହାଡ଼ା, ଶୁଣ୍ଠି ଓ ପିପ୍ପଳୀ ଏହି ଚାରି ଦ୍ରବ୍ୟକୁ ସମାନ ଭାଗରେ ଆଣି ଶୁଖାଇ କୁଟି ଚୂର୍ଣ୍ଣ କରି ରଖିଥିବ । ଏହି ଚୂର୍ଣ୍ଣରୁ ଅତି ଅଳ୍ପ ନେଇ କିଞ୍ଚିତ୍ ମହୁ ସଙ୍ଗରେ ଖଲି କିଛିଦିନ ସେବନ କଲେ ବହୁଦିନର କାସ ଓ ଶ୍ୱାସ ଭଲ ହୁଏ ।

(ଗ) କୌଣସି ବ୍ୟକ୍ତିର ଦେହରେ ଯଦ୍ୟପି ରକ୍ତ ଗଡ଼ି ହସ୍ତ ବା ପାଦରେ ରହି ଫୁଲି ବ୍ୟଥା କରୁଥିବ, ତେବେ ପୋକଶୁଙ୍ଘା ପତ୍ର ସଙ୍ଗରେ ଅଳ୍ପ ଗୋଲମରିଚ ମିଶାଇ ବାଟି ସେହି ରକ୍ତ ଉପରେ ଲେପ ଦେଲେ କିଛି ସମୟ ପରେ ସେ ରକ୍ତ କ୍ରମେ କ୍ରମେ ଖେଳିଯାଇ ସେ ସ୍ଥାନର ଫୁଲା ଭଲ ହୁଏ ।

(ଘ) ପୋକଶୁଙ୍ଘା ପତ୍ର ରସ ସଙ୍ଗରେ ମହୁ ମିଶାଇ ଚଉଦ ଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ବହୁଦିନର ରକ୍ତପିତ୍ତ ରୋଗ ଦୂର ହୁଏ ।

(ଙ) ପୋକଶୁଙ୍ଘା ରସ ସଙ୍ଗରେ ପାନରସ ମିଶାଇ ତାହାକୁ ନିଆଁରେ ବସାଇ ଅଳ୍ପ ଉଷ୍ମକରି ସେଥିରୁ ତିନିପାନ ସେବନ କରାଇଲେ ଶିଶୁମାନଙ୍କର କଫ ତରଳ ହୋଇ ତାହା ସହଜରେ ନିର୍ଗତ ହୁଏ ।

(ଚ) ପୋକଶୁଙ୍ଘା ରସ ସଙ୍ଗରେ ହଳଦିକୁ ବାଟି ଦେହରେ ଲଗାଇଲେ ଚର୍ମରୋଗ ଦୂର ହୁଏ ଓ ଦେହ ଶାନ୍ତି ଲାଗେ ।

# ପୋଦିନା

ପୋଦିନାକୁ ଇଂରାଜୀରେ ଡାଳରେଡ଼ନ୍‌ମେଣ୍ଟ ଏବଂ ସଂସ୍କୃତ ଭାଷାରେ ରୋଚନୀ ଓ ପୁତନୀ କହନ୍ତି ।

## ଆୟୁର୍ବେଦୋକ୍ତ ଗୁଣ

ପୋଦିନା ସୁଗନ୍ଧ, ଅଗ୍ନିଦୀପକ ଓ ବଳକାରକ ଏବଂ ମୁଖର ଜଡ଼ତା, କଫ, ବାୟୁ, ବମନ ଓ ଅରୁଚି ନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ପୋଦିନାପତ୍ର, ଗୁଜୁରାତି ଓ ବୀଟ ଲୁଣ ଏହି ତିନି ଦ୍ରବ୍ୟ ଏକତ୍ର ବାଟି ପ୍ରତ୍ୟେକ ଥର ଏକମସା ପ୍ରମାଣେ ସେବନ କଲେ ଅଜୀର୍ଣ୍ଣ ନିବାରଣ ହୁଏ ।

(ଖ) ପୋଦିନାପତପତ୍ର ସଙ୍ଗରେ ଗୋଲମରିଚ ମିଶାଇ ବାଟି ପ୍ରତ୍ୟହ ଦୁଇବେଳା ସେବନ କଲେ ବମନ, ଅରୁଚି, ଅତିସାର, ଆମନାଳ, ରକ୍ତଝାଡ଼ା, ଗ୍ରହଣୀ ଓ ଯାବତୀୟ ପ୍ରକାର ଝାଡ଼ା ଶୀଘ୍ର ଭଲ ହୁଏ ।

(ଗ) ସିଦ୍ଧି ୧ ଭାଗ, ଲବଙ୍ଗ ୧ ଭାଗ, ଜାଇଫଳ ୧ ଭାଗ ଓ ପୋଦିନା ପତ୍ର ୧ ଭାଗ ଏକତ୍ର ବାଟି ପ୍ରତ୍ୟେକ ଝାଡ଼ା ଉପରେ ସେବନ କଲେ ଆମନାଳରକ୍ତ ଝାଡ଼ା, ଅତିସାର, ଗ୍ରହଣୀ ଓ ବାନ୍ତି ଶୀଘ୍ର ନିବାରିତ ହୁଏ ।

(ଘ) ପୋଦିନା ପତ୍ର ସଙ୍ଗରେ ଶୁଣ୍ଠୀ ଓ ଯୁଆଣୀ ସମଭାଗରେ ବାଟି ସେବନ କରାଇଲେ ବାୟୁ ଓ ଶୂଳରୋଗର ଯନ୍ତ୍ରଣା ଶୀଘ୍ର ନିବାରିତ ହୁଏ । ଏହା ଅତି ଚମତ୍କାର ଉପାୟ ଅଟେ ।

(ଙ) ପୋଦିନା ପତ୍ର, ଲବଙ୍ଗ, ଜୀରା ଓ ମରିଚ ଏ ଚାରି ଦ୍ରବ୍ୟକୁ ସମାନ ଭାଗରେ ଏକତ୍ର ବାଟି କିଛିଦିନ ପର୍ଯ୍ୟନ୍ତ ସେବନ କଲେ ବାୟୁ, ପିତ୍ତ, ଶିରଃପୀଡ଼ା, ଅରୁଚି, ବମନ, ତୃଷ୍ଣା ଓ ଅଜୀର୍ଣ୍ଣ ପ୍ରଭୃତି ରୋଗମାନ ଶୀଘ୍ର ଦୂର ହୁଏ ।

(ଚ) ପୋଦିନା ପତ୍ର ରସ ସଙ୍ଗରେ ଅଳ୍ପ କାଗଜୀଲେମ୍ବୁ ରସ ଓ ଅଳ୍ପ ମିଶ୍ରିଗୁଣ୍ଡା ମିଶାଇ ସେବନ କଲେ ସବୁପ୍ରକାର ଅତିସାର, ଆମାଶୟ, ଅଜୀର୍ଣ୍ଣ, ଆଧ୍ମାନ (ପେଟଫାମ୍ପିବା), ଅମ୍ଳଢକାର ଓ ଉଦରର ସବୁପ୍ରକାର ଶୂଳପୀଡ଼ା ଶୀଘ୍ର ନିବାରଣ ହୁଏ ।

(ଛ) ପୋଦିନା ପତ୍ରକୁ କେବଳ ଶୁଣ୍ଠୀ ସଙ୍ଗରେ ବାଟି ସାତପାନ ସେବନ କଲେ ପେଟ ଭିତର ଆମଦୋଷ ବିନାଶ ହୁଏ ।

## ବକୁଳ

ବକୁଳକୁ ଉତ୍କଳରେ ବଉଳଗଛ ଡାକ୍ତରୀରେ ମିମୁସୋପ ସୋଲିଙ୍ଗି, ଇଂରାଜୀରେ ସରିନମ୍ ମେଡ୍‌ଲେସ୍ ଏବଂ ସଂସ୍କୃତରେ ବକୁଳ, ମଧୁଗନ୍ଧ ଓ ସିଂହକେଶର ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ବଉଳ କଷାୟ, କଟୁରସ, କଟୁବିପାକ, ଗୁରୁ ଓ ଉଷ୍ଣବୀର୍ଯ୍ୟ ଏବଂ କଫ, ପିତ୍ତ, କୃମି, ବିଷ, ଶ୍ୱିତ୍ର (ଧବଳ ଛଉ) ଓ ଦନ୍ତରୋଗ ପ୍ରଭୃତି ବିନାଶକ । ବଉଳ ଫଳ ମଧୁର କଷାୟ ରସ, ବିଷଘ୍ନ, ସ୍ନିଗ୍ଧ, ସଂଗ୍ରାହକ ଓ ଦନ୍ତର ସ୍ଥିରତା କାରକ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବଉଳ ଛେଲି, ନିମ୍ବ ଛେଲି ଓ ହିଣ୍ତାଳ ଛେଲି ଏ ତିନି ଦ୍ରବ୍ୟକୁ ସମାନ ଭାଗରେ ଆଣି ଏକତ୍ର ଜଳରେ ସିଝାଇ ସେହି ଜଳ ଅଳ୍ପ ଉଷ୍ଣ ଥାଉଁ ଥାଉଁ ତହିଁରେ କୁଳି କଲେ ସବୁପ୍ରକାର ତୁଣ୍ଡ ଘା ଭଲ ହୁଏ ।

(ଖ) ବଉଳ କୋଳିକୁ ଛେଚି ତହିଁରୁ ରସ ବାହାର କରି ସେହି ରସ ସଙ୍ଗରେ ହରିତାଳକୁ ଘୋରି ଛଉ ଉପରେ ୩/୪ ବାର ଲେପ ଦେଲେ ସବୁ ପ୍ରକାର ଛଉ ଭଲ ହୁଏ ।

(ଗ) ପ୍ରତ୍ୟହ ଦାନ୍ତ ଘଷିଲା ବେଳେ ପ୍ରଥମରେ ଗୋଟିଏ ବଉଳକୋଳିକୁ ଚୋବାଇ ତା ପରେ ଯେ କୌଣସି ଦାନ୍ତ କାଠିରେ ଦାନ୍ତ ଘଷିଲେ ହଲୁଥିବା ଦାନ୍ତ ବସିଯାଏ ।

## ବଟବୃକ୍ଷ

ବଟବୃକ୍ଷ ଉତ୍କଳରେ ବରଗଛ ଏବଂ ଡାକ୍ତରୀରେ ପିକ୍‌ସବେଙ୍ଗଲିନ୍‌ସାଇସ୍ ଏବଂ ସଂସ୍କୃତରେ ନ୍ୟଗ୍ରୋଧ, ବହୁପାଦ, ନନ୍ଦୀଶୃଙ୍ଗ, ବୃହତ୍‌ପାଦ, ବୈଶ୍ରବଣାଳୟ, ବୈଶ୍ରବଣେୟ, ବୃକ୍ଷନାଥ, ଯମପ୍ରିୟ, ରକ୍ତଫଳ, ଶୃଙ୍ଗୀ, କର୍ମଜ, ଧ୍ରୁବ, କ୍ଷୀରୀ, ବୈଶ୍ରବଣାବାସ, ଭାଣ୍ଡୀର, ଜଟାଳ, ରୋହିଣ, ଅବରୋହୀ, ବିଟପୀ, ସ୍କନ୍ଧରୁହ, ମଣ୍ଡଳୀ, ମହାଚ୍ଛାୟ, ଭୃଙ୍ଗୀ, ଯକ୍ଷାବାସ, ଯକ୍ଷତରୁ, ପାଦରୋହଣ, ନୀଳା, ଶିଫାରୁହ ଓ ବନସ୍ପତି ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ବଟ କଷାୟରସ, ଧାରକ, ଗୁରୁ, ଶୀତବୀର୍ଯ୍ୟ, କର୍ଣ୍ଣପ୍ରସାଦକ ଓ ଅଳ୍ପ ରସାୟନ ଏବଂ କଫ, ପିତ୍ତ, ବ୍ରଣ, ବିସର୍ପ, ଦାହ ଓ ଯୋନିରୋଗ ପ୍ରଭୃତି ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବରଗଛର ନୂତନ ଓହଳକୁ ଚାଉଳଧୁଆ ପାଣିରେ ବାଟି ଦହି ସଙ୍ଗେ ମିଶାଇ ପିଇଲେ ରକ୍ତାତିସାର ଭଲ ହୁଏ ।

(ଖ) କୌଣସି ସ୍ଥାନରେ ବ୍ରଣ, ଶୋଥ କିମ୍ବା ବାଘୀ ଉଠିବା ମାତ୍ରକେ ଖଣ୍ଡେ ସାଦା କାଗଜରେ କିଛି ବରକ୍ଷୀର ଦେଇ ସେ ସବୁ ଉପରେ ମଡ଼ାଇ ଦେଲେ ଶୀଘ୍ର ବସିଯାଏ ।

(ଗ) ବରକ୍ଷୀର ସଙ୍ଗେ ଅଳ୍ପ ମିଶ୍ରିଗୁଣ୍ଡା ମିଶାଇ ୭ ପାନ ସେବନ କଲେ ସବୁ ପ୍ରକାର ମେହରୋଗ ଭଲହୁଏ ।

## ବରୁଣ

ବରୁଣକୁ ଡାକ୍ତରୀରେ କାପ୍‌ପାରିସ ଟାଇଫୋଲିଆ ଏବଂ ସଂସ୍କୃତରେ ବରଣ, ବରୁଣ, ସେତୁ, ବରାଣ, ତିକ୍ତଶାକ, କୁମାରକ, ଅଶ୍ମରୀଘ୍ନ, ଶିଖିମଣ୍ଡଳ, ଶ୍ୱେତବୃକ୍ଷ, ସାଧୁବୃକ୍ଷ ଓ ମାରୁତାପହ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଚିକିତ୍ସା ଗୁଣ

ବରୁଣ କଟୁରସ, ଲଘୁପାକ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ, ମୂତ୍ରକାରକ, ଅଗ୍ନିବର୍ଦ୍ଧକ ଓ ପିତ୍ତଜନକ ଏବଂ କଫ, ବାୟୁ, ରକ୍ତଦୋଷ, ବିଦ୍ରଧି, ବାତରକ୍ତ, ଗୁଳ୍ମ, କୃମି, ମୂତ୍ରକୃଚ୍ଛ୍ର ଓ ଅଶ୍ମରୀ ରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବରୁଣ ପତ୍ରର ରସକୁ ସୋରିଷ ତେଲରେ ପାକ କରି ସେହି ତେଲକୁ କର୍ଣ୍ଣରେ ପକାଇଲେ କାନରୁ ପୂଯ ବୋହିବା ନିବାରିତ ହୁଏ ।

(ଖ) ବରୁଣ ଛେଲିକୁ ଗାଈ ଦୁଧରେ ବାଟି ତହିଁରୁ ଅର୍ଦ୍ଧତୋଳା ମାତ୍ରାରେ ସାତଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କଲେ କୃମି, ଗୁଳ୍ମ, କଫ ଓ ବାୟୁ ପ୍ରଭୃତି ରୋଗ ଦୂର ହୁଏ ।

(ଗ) ବରୁଣ ପତ୍ରକୁ ଜଳରେ ବାଟି ଗଡ଼ାରକ୍ତ ଉପରେ ଲେପଦେଲେ ସେ ରକ୍ତ ଭଲ ହୋଇଯାଏ ।

## ବାଇଡ଼ଙ୍କ

ବାଇଡ଼ଙ୍କକୁ ଡାକ୍ତରୀରେ ମିଉକୁନା ପ୍ରୁରିଏନ୍‌ସ ଏବଂ ସଂସ୍କୃତରେ କପିଗଚ୍ଛୁ, ଆତ୍ମଗୁପ୍ତା, ବୃଷ୍ୟା, ମର୍କଟୀ, ଅଜରା, କଣ୍ଡୁରା, ଅବ୍ୟଙ୍ଗା, ଦୁସ୍ପର୍ଶା, ପ୍ରାବୃଷାୟଣୀ, ଲାଙ୍ଗଳା, ଶୁକଶିମ୍ବି ଓ ବାନରୀ ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ବାଇଡ଼ଙ୍କ ଗୁରୁପାକ, ଶୁକ୍ରବର୍ଦ୍ଧକ, ସୁସ୍ୱାଦୁ, ଅଳ୍ପ ତିକ୍ତ ରସ, ରତିଶକ୍ତି ବର୍ଦ୍ଧକ, ବାଜୀକାରକ ଓ ବଳ, ବର୍ଣ୍ଣ, ରସ, ରକ୍ତାଦି ବୃଦ୍ଧି କାରକ ଏବଂ କଫ, ପିତ୍ତ, ବାତ, ଶୀତପିତ୍ତ, ରକ୍ତଦୋଷ, କ୍ଷୟ, ବ୍ରଣ ଓ ଦୁଷ୍ଟକ୍ଷତାଦି ରୋଗ ବିନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବାଇଡ଼ଙ୍କ ମଞ୍ଜିକୁ କୁଟି ଚୂର୍ଣ୍ଣ କରି ସେହି ଚୂର୍ଣ୍ଣରୁ ଅଳ୍ପ ନେଇ ଜଳ ସଙ୍ଗେ ଗୋଳି ସେବନ କଲେ ମୂତ୍ରରୋଧ ରୋଗ ଶୀଘ୍ର ଆରୋଗ୍ୟ ହୁଏ ।

(ଖ) ବାଇଡ଼ଙ୍କ ମଞ୍ଜିକୁ ଅଳ୍ପ ଜଳ ସଙ୍ଗେ ବାଟି ଲେପନ କଲେ ବିଛା, କଙ୍କାଡ଼ାବିଛା, ମହୁମାଛି ଓ ବିରୁଡ଼ି ବିଷାକ୍ତ ଜନ୍ତୁଙ୍କ ଦଂଶନଜନିତ ଜ୍ୱାଳା ଯନ୍ତ୍ରଣାଦି ଶୀଘ୍ର ଭଲ ହୁଏ ।

(ଗ) ବାଇଡ଼ଙ୍କ ମଞ୍ଜିକୁ କୁଟି ଚୂର୍ଣ୍ଣ କରି ସେହି ଚୂର୍ଣ୍ଣରୁ କିଛି ନେଇ ତାହା ସଙ୍ଗେ କିଞ୍ଚିତ ଅଦାରସ ଓ କିଞ୍ଚିତ ମହୁ ମିଶାଇ ସେବନ କଲେ ଯାବତୀୟ କାସ, ଶ୍ୱାସ, ଶ୍ଳେଷ୍ମା ଓ ଜ୍ୱର ପ୍ରଭୃତି ଅତି ଆଶ୍ଚର୍ଯ୍ୟ ଭାବରେ ଭଲ ହୁଏ ।

(ଘ) ବାଇଡ଼ଙ୍କ ମଞ୍ଜି ଚୂର୍ଣ୍ଣ ଓ ମିଶ୍ରି ଗୁଣ୍ଡା ଏହି ଦୁହିଙ୍କି ସମାନ ଭାବରେ ମିଶାଇ ସେଥିରୁ ଅର୍ଦ୍ଧତୋଳା ନେଇ ଗବ୍ୟଦୁଗ୍ଧରେ ଗୋଳି ପନ୍ଦରଦିନ ପର୍ଯ୍ୟନ୍ତ ନିୟମିତ ଭାବରେ ଦୁଇବେଳା ସେବନ କଲେ ଇନ୍ଦ୍ରିୟ ଶିଥିଳତା, ଶୁକ୍ରକ୍ଷୟ, ସ୍ୱପ୍ନଦୋଷ ଓ ଧ୍ୱଜଭଙ୍ଗ ରୋଗ ଭଲ ହୁଏ । ସୁସ୍ଥବ୍ୟକ୍ତି ସେବନ କଲେ ସେମାନଙ୍କର ଅତ୍ୟନ୍ତ ଶୁକ୍ର ବର୍ଦ୍ଧିତ ହୁଏ ।

(ଙ) ବାଇଡ଼ଙ୍କ ମଞ୍ଜି ଚୂର୍ଣ୍ଣ ୨ ଭରି, ଅଶ୍ୱଗନ୍ଧା ଚୂର୍ଣ୍ଣ ୨ ଭରି, କୋଇଲେଖା ମଞ୍ଜି ଚୂର୍ଣ୍ଣ ୨ ଭରି, ଭୁଇଁକଖାରୁ ଚୂର୍ଣ୍ଣ ୨ ଭରି, ବାଳଶିମୂଳୀ ମୂଳ ଚୂର୍ଣ୍ଣ ୨ ଭରି, ଶତାବରୀ ମୂଳ ଚୂର୍ଣ୍ଣ ୨ ଭରି ଓ ତାଳମୂଳି ଚୂର୍ଣ୍ଣ ୨ ଭରି ନେଇ ଗବ୍ୟଦୁଗ୍ଧ ସଙ୍ଗରେ ଗୋଳି କିଛିଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କଲେ ବଳ, ବୀର୍ଯ୍ୟ, ବର୍ଣ୍ଣ, ରକ୍ତ ଓ ମାଂସ ପ୍ରଭୃତି ଦିନକୁଦିନ ଅତ୍ୟନ୍ତ ଭାବରେ ବର୍ଦ୍ଧିତ ହୁଏ । ଦେହରୁ ଯାବତୀୟ ବ୍ୟାଧି ବିନାଶ ହୁଏ । ଏହି ଔଷଧ ସେବନ କରିବାଦ୍ୱାରା ସ୍ମରଣଶକ୍ତି ବୃଦ୍ଧି ପାଏ । ଶିଶୁମାନେ ସେବନ କଲେ ନୀରୋଗ ହୁଅନ୍ତି । ଗାୟକମାନେ ସେବନ କଲେ କଣ୍ଠସ୍ୱର ମଧୁର ହୁଏ । ଯୁବକମାନେ ସେବନ କଲେ ବହୁକାଳ ପର୍ଯ୍ୟନ୍ତ ଯୁବା ସମୟର ଆନନ୍ଦ ଉପଭୋଗ କରନ୍ତି । ବୟସାଧିକ୍ୟ ହୋଇ ସୁଦ୍ଧା ଯେଉଁ କନ୍ୟା ରଜସ୍ୱଳା ହେଉ ନଥିବ, ସେ ଅଳ୍ପଦିନ ମଧ୍ୟରେ ରଜସ୍ୱଳା ହେବ । ଯୁବତୀମାନେ ଉତ୍ତମ ସନ୍ତାନ ଜନ୍ମ କରିବେ । ଯେଉଁ ସ୍ତ୍ରୀମାନଙ୍କର ଜରାୟୁ କିମ୍ବା ପ୍ରଦର ପ୍ରଭୃତି ଦୋଷଯୁକ୍ତ ରୋଗ ଥିବାରୁ ଗର୍ଭ ସ୍ଥିର ହେଉ ନ ଥିବ ଅଥବା ସନ୍ତାନ ବଞ୍ଚୁ ନ ଥିବ, ସେମାନଙ୍କର ଗର୍ଭ ସ୍ଥିର ହେବ ଏବଂ ଉତ୍ତମ ସୁନ୍ଦର ଦୀର୍ଘଜୀବୀ ସନ୍ତାନ ଜାତ ହେବ । ବୃଦ୍ଧଙ୍କର ଶକ୍ତି ବୃଦ୍ଧି ହେବ । କି ପିଲା, କି ବଡ଼, କି ସ୍ତ୍ରୀ, କି ପୁରୁଷ ସମସ୍ତଙ୍କ ଦେହରୁ ସବୁପ୍ରକାର ରୋଗ ବିଦୂରିତ ହେବ ।

(ଚ) ବାଇଡ଼ଙ୍କ ମଞ୍ଜିକୁ କୁଟି ଚୂର୍ଣ୍ଣକରି ସେହି ଚୂର୍ଣ୍ଣ ସଙ୍ଗେ ଅଳ୍ପ ମହୁ ମିଶାଇ ୪/୫ ପାନ ପର୍ଯ୍ୟନ୍ତ ସେବନ କଲେ ସ୍ତ୍ରୀମାନଙ୍କର ଶ୍ୱେତପ୍ରଦର ରୋଗ ଭଲ ହୁଏ ।

## ବାକୁଚି

ବାକୁଚିକୁ ଉତ୍କଳରେ ବାକୁଚି ଓ ସୋମରାଜ ମଞ୍ଜି, ଡାକ୍ତରୀରେ ସ୍ରାଟୁଲା ଏନ୍‌ଥେଲ ମିନିଟିକା ଏବଂ ସଂସ୍କୃତରେ ସୋମରାଜୀ, ରୂପର୍ଣ୍ଣିକା, ଅବଲଗଜ, ଶଶୀଲେଖି, କୃଷ୍ଣଫଳା, ସୋମ, ସୋମବଲ୍ଲୀ, କାଳମେଷୀ ଓ କୃଷ୍ଣଘ୍ନୀ ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ବାକୁଚି ମଧୁର ରସ, ଗୁରୁପାକ, ରୁକ୍ଷ, ସାରକ ଓ ଅଗ୍ନିବର୍ଦ୍ଧକ ଏବଂ ପିତ୍ତ, ଶ୍ଳେଷ୍ମା, ରକ୍ତପିତ୍ତ, ମସ୍ତକଭ୍ରମ, ଶିରୋପୀଡ଼ା, କେଶର ଅକାଳ ପକ୍ୱତା, କୁଷ୍ଠ, ପ୍ରମେହ, ଜ୍ୱର, କୃମି, ଶ୍ୱାସ, କାସ, ଶୋଥ, ଆମ ଓ ପାଣ୍ଡୁରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବାକୁଚିକୁ କୁଟି ଚୂର୍ଣ୍ଣ କରି ସେହି ଚୂର୍ଣ୍ଣରୁ ଅର୍ଦ୍ଧତୋଳା ପରିମାଣ ସାତଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କଲେ କଣ୍ଡୁ, ଦଦ୍ରୁ, ଧବଳକୁଷ୍ଠ, କୃମି, ଅଜୀର୍ଣ୍ଣ ଓ ରକ୍ତବିକାର ପ୍ରଭୃତି ଅଳ୍ପଦିନ ମଧ୍ୟରେ ଭଲ ହୁଏ ।

(ଖ) ବାକୁଚି ଓ ଚିରେଇତା ଦୁହିଁକି ଏକତ୍ର ଜଳରେ ସିଝାଇ ସେହି ସିଝାଜଳକୁ ଦୁଇ ତିନି ପାନ ସେବନ କଲେ ଅସାଧ୍ୟ ଜ୍ୱର ଶୀଘ୍ର ଭଲ ହୁଏ ।

(ଗ) ବାକୁଚି ଚୂର୍ଣ୍ଣ ସହିତ ଅଳ୍ପ ଲୁଣ ମିଶାଇ ସେବନ କଲେ କୁଷ୍ଠ ପ୍ରଭୃତି କ୍ଷତାଦି ରୋଗ ଅତି ଅଳ୍ପ ଦିନରେ ଶୁଷ୍କ ହୋଇଯାଏ ।

(ଘ) ବାକୁଚି ତେଲକୁ ବା ବାକୁଚିକୁ ଜଳରେ ବାଟି ଛଉ, ଧବଳଛଉ କିମ୍ବା ଅକାଟ ଛଉରେ ଦିନାକେତେ ଲେପନ କଲେ ଭଲ ହୋଇଯାଏ ।

(ଙ) ରାଶିତେଲ ସଙ୍ଗେ ବାକୁଚିକୁ ୭/୮ ଦିନ ପର୍ଯ୍ୟନ୍ତ ଭିଜାଇ ଛାଣି ସେହି ତେଲକୁ ମୁଣ୍ଡରେ ଲଗାଇଲେ ମୁଣ୍ଡରୁ ହୁଲା ବାହାରିବା, ରୂପି, ମୁଣ୍ଡର ଯାଦୁ, ଅସମୟରେ ବାଳ ପାଚିବା, ମୁଣ୍ଡରୁ କେଶ ଉପୁଡ଼ିବା, ମୁଣ୍ଡ ଗରମ ହେବା, ମସ୍ତକବାତ ପ୍ରଭୃତି ଭଲ ହୁଏ । ଏହାଦ୍ୱାରା ମସ୍ତକ ଶୀତଳ ରହେ ।

## ବାସଙ୍ଗ

ବାସଙ୍ଗକୁ ଡାକ୍ତରୀରେ ଅଧାତୋଡ଼ ଏବଂ ସଂସ୍କୃତରେ ଭିଷଗ୍‌ମାତା ବୃକ୍ଷ, ସିଂହପର୍ଣ୍ଣ, ବାସକ, ବାସ, ସିଂହିକା, ସିଂହପୁଚ୍ଛି ଓ ବାଜିଦନ୍ତା ପ୍ରଭୃତି କୁହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ବାସଙ୍ଗ ତିକ୍ତ କଷାୟରସ, ସ୍ୱରବର୍ଦ୍ଧକ, ବାୟୁଜନକ, ଲଘୁ, ହୃଦୟ ଗ୍ରାହୀ ଓ ଶୀତବୀର୍ଯ୍ୟ । ଏହା କାଶ, ଶ୍ୱାସ, ରକ୍ତପିତ୍ତ, କଫ, ତୃଷ୍ଣା, ଜ୍ୱର, ବମନ, ପ୍ରମେହ, କୁଷ୍ଠ, କ୍ଷୟ ଓ ଉଦାବର୍ତ୍ତ ରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବାସଙ୍ଗପତ୍ର ରସ ସଙ୍ଗେ ଅଳ୍ପ ମହୁ ମିଶାଇ ସାତଦିନ ଯାଏ ଦୁଇବେଳା ସେବନ କଲେ ସମସ୍ତ ପ୍ରକାର କାଶ, ଶ୍ୱାସ, କ୍ଷୟ, ରକ୍ତପିତ୍ତ ଓ ସ୍ତ୍ରୀମାନଙ୍କର ଉଦରସ୍ଥ ବାୟୁ ବିନାଶ ପାଏ ।

(ଖ) କୌଣସି ଘାଆକୁ ନିମ୍ବପତ୍ର ସିଝା ପାଣିରେ ଧୋଇ ତା ଉପରେ ବାସଙ୍ଗ ପତ୍ର ଚୂର୍ଣ୍ଣ ଦେଇ ପଟି ବାନ୍ଧିଲେ ଅଳ୍ପ ଦିନ ମଧ୍ୟରେ ଅସାଧ୍ୟ ଘାଆ ଶୁଖିଯାଏ ।

(ଗ) ବାସଙ୍ଗ ରସକୁ ନାକରେ ପକାଇଲେ ପୀନସ ରୋଗ ଭଲ ହୁଏ ।

## ବାହାଡ଼ା

ବାହାଡ଼ାକୁ ଇଂରେଜୀରେ ବେଲେରିକ୍ ମାଇରୋ ବେଲାନ, ଲାଟିନରେ ଟେରମି ନାଲିଆ ବେରିଲିକ୍ ଏବଂ ସଂସ୍କୃତରେ ବିଭୀତକ. ଅକ୍ଷ, କର୍ଷଫଳ, କଳିଦ୍ରୁମ, ଭୂତାବାସ ଓ କଳିଯୁଗାଳୟ ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ବାହାଡ଼ା କଷାୟରସ, ଉଷ୍ଣବୀର୍ଯ୍ୟ, ଶୀତସ୍ପର୍ଶ, ମଧୁରବିପାକ, ବାସଘ୍ନ, ଭେଦକ ଓ ରୁକ୍ଷ ଏବଂ କେଶ ହିତକାରକ, ଚକ୍ଷୁରୋଗ ନାଶକ, କୃମି ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଗୋଟିଏ ବାହାଡ଼ାର ମଞ୍ଜି ବ୍ୟତୀତ ଅବଶିଷ୍ଟ ଅଂଶ (ବାହାଡ଼ା ରସ) ସଙ୍ଗରେ ଅଳ୍ପ ଲୁଣ ମିଶାଇ କୁଟି ଚୂର୍ଣ୍ଣ କରି ଅଳ୍ପ ଜଳ ସଙ୍ଗରେ ଗୋଳାଇ ସେବନ କଲେ କାସ ଭଲ ହୁଏ ।

(ଖ) ସେହପରି ମଞ୍ଜି ବ୍ୟତୀତ ବାହାଡ଼ା ରସକୁ ଖସା ତେଲରେ ପକାଇ ସେହି ତେଲକୁ ମୁଣ୍ଡରେ ଲଗାଇଲେ ଅଳ୍ପ ଦିନ ମଧ୍ୟରେ ଶୁକ୍ଳ କେଶ କୃଷ୍ଣ ହୋଇଯାଏ ।

(ଗ) ବାହାଡ଼ା ମଞ୍ଜି ଭିତରେ ଥିବା ରସକୁ ଜଳ ସଙ୍ଗେ ଘୋରି ଚକ୍ଷୁରେ ଘେନିଲେ ସବୁ ପ୍ରକାର ଚକ୍ଷୁରୋଗ ଭଲ ହୁଏ ।

(ଘ) ଭୋଜନ ପୂର୍ବରୁ ବାହାଡ଼ା ରସ ଅଳ୍ପ ସେବନ କଲେ ଖାଦ୍ୟଦ୍ରବ୍ୟ ସହଜରେ ହଜମ ହୁଏ ।

(ଙ) ବାହାଡ଼ା ରସ ସଙ୍ଗରେ କିଞ୍ଚିତ ମହୁ ମିଶାଇ ତିନିପାନ ସେବନ କଲେ ସବୁ ପ୍ରକାର ଅତିସାର ଭଲ ହୁଏ ।

## ବିଲ୍ୱ

ବିଲ୍ୱକୁ ଉତ୍କଳରେ ବେଲ, ଡାକ୍ତରୀରେ ଆରଗଲ ମାର୍‌ମୋଲସ ଏବଂ ସଂସ୍କୃତରେ ବିଲ୍ୱ, ଶାଣ୍ଡିଲ୍ୟ, ଶୈଳୁଷ, ମାଲୁର, ଶ୍ରୀଫଳ, କଫୀତନ, ମାହାକପିତ୍ଥ, ଅତିବାତ, ଅତିମାଙ୍ଗଲ୍ୟ, ମହାଫଳ, ଶଲ୍ୟ, ହୃଦଗନ୍ଧ, ଶଲାଟୁ, କର୍କଟାହ୍ବ, ଶୈଳପତ୍ର, ଶିବେଷ୍ଟ,

ପତ୍ରଶ୍ରେଷ୍ଠ, ତ୍ରିପତ୍ର, ଗନ୍ଧପତ୍ର, ଲକ୍ଷ୍ମୀଫଳ, ଗନ୍ଧଫଳ, ଦୁରାରୁହ, ତ୍ରିଶାଖା ପତ୍ର, ଶିବଦ୍ରୁମ, ଦଶାଫଳ, ସତ୍ୟଫଳ, ସୁଭୀତିକ ଓ ସମୀରସାର ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

କଷିବେଲ କଟୁତିକ୍ତ, କଷାୟରସ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ, ଅଗ୍ନିବର୍ଦ୍ଧକ, ପାଚକ ଓ ମଳରୋଧକ ଏବଂ କଫ, ବାୟୁ, ଅତିସାର, ଜ୍ୱର, ଅଗ୍ନିମାନ୍ଦ୍ୟ, କୃମି ଓ ଅଜୀର୍ଣ୍ଣ ପ୍ରଭୃତି ରୋଗନାଶକ ।

କଞ୍ଚାବେଲ କଷାୟ ମଧୁର ରସ, ସ୍ନିଗ୍ଧ, ଗୁରୁପାକ, ଅଗ୍ନିବର୍ଦ୍ଧକ, ରୁଚିକାରକ ଓ ମଳରୋଧକ ଏବଂ କଫ, ପିତ୍ତ, ଜ୍ୱର, ଅତିସାର ଓ ଗ୍ରହଣୀ ରୋଗ ବିନାଶକ ।

ପାଚିଲାବେଲ ମଧୁରରସ, ଗୁରୁପାକ, ମଳବର୍ଦ୍ଧକ, ଶୀତଳ, ଶୁକ୍ରବର୍ଦ୍ଧକ, ଅଗ୍ନିମାନ୍ଦ୍ୟକାରକ, ବିଦାହୀ, ଦୁର୍ଗନ୍ଧ ବାୟୁଜନକ, ବିଷ୍ଟମ୍ଭ କାରକ, ତ୍ରିଦୋଷଜନକ ଓ ଶାନ୍ତିକାରକ ଏବଂ ଚିତ୍ତ ଅସ୍ଥିର, ଉନ୍ମାଦ, ଭ୍ରମ, କ୍ଲାନ୍ତି ଓ ଅତିସାର ପ୍ରଭୃତି ରୋଗ ନାଶକ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କଷିବେଲକୁ ଖଣ୍ଡ ଖଣ୍ଡ କରି କାଟି ଖରାରେ ଶୁଖାଇ ରଖିଲେ ତାକୁ ବେଲଶୁଣ୍ଠା କହନ୍ତି । ବେଲଶୁଣ୍ଠା କୁଟି ଚୂର୍ଣ୍ଣକରି ମହୁରେ ଖଳି ଗୁଟି ଖାଇଲେ ବାୟୁ, ପେଟଫମ୍ପା, ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଏବଂ ଅତିସାର ଝାଡ଼ା, ଆମଶୂଳ ଝାଡ଼ା, ନାଳରକ୍ତ ଝାଡ଼ା, ବହୁଦିନର ଅସାଧ୍ୟ ଝାଡ଼ା ପ୍ରଭୃତି ଯାବତୀୟ ପେଟ ରୋଗ ଭଲ ହୁଏ ।

(ଖ) କେତେଗୁଡ଼ିଏ ବେଲପତ୍ର ସହିତ କେତେଗୁଡ଼ିଏ ଗୋଲମରିଚ ମିଶାଇ ଜଳରେ ବାଟି ତିନିଦିନ ପର୍ଯ୍ୟନ୍ତ ସକାଳେ ସେବନ କଲେ ଅଜୀର୍ଣ୍ଣ, ପେଟଫମ୍ପା ଓ ଯାବତୀୟ ବାୟୁଦୋଷ ଭଲ ହୁଏ ।

(ଗ) କଞ୍ଚାବେଲକୁ ଆଣି ନିଆଁରେ ପୋଡ଼ି ରଖିବ । ଶୀତଳ ହେଲେ ତହିଁରେ ଅଳ୍ପ ମିଶ୍ରିଗୁଣ୍ଡା ଦେଇ ଖାଇଲେ ଗ୍ରହଣୀ, ଅତିସାର ଓ ନାଳରକ୍ତ ଝାଡ଼ା ପ୍ରଭୃତି ହଠାତ୍ ବନ୍ଦ ହୁଏ ।

(ଘ) ବେଲପତ୍ରକୁ ଛେଚି ସେ ରସରେ ଅଳ୍ପ ମରିଚଗୁଣ୍ଡ ମିଶାଇ ପିଲାଙ୍କୁ ଦୁଇଚାରିଥର ସେବନ କରାଇଲେ ପେଟର ଗୁଳ୍ମ, କୃମି ଓ ଅଗ୍ନିମାନ୍ଦ୍ୟ ପ୍ରଭୃତି ଦୂର ହୁଏ ।

(ଙ) ବେଲ ଗଛର ମୂଳକୁ ଅଦା, ଗୋଲମରିଚ ମିଶାଇ ବାଟି ସାତପାନ ସେବନ କଲେ କ୍ଷୁଧା ବୃଦ୍ଧି ହୁଏ ।

(ଚ) ପାଚିଲା ବେଲକୁ ଜଳରେ ଚକଟି ଛାଣି ତହିଁରେ କନ୍ଦ ପ୍ରଭୃତି ମିଷ୍ଟଦ୍ରବ୍ୟ ମିଶାଇ ପଣା ପ୍ରସ୍ତୁତ କରି ପାନ କଲେ ଅତ୍ୟନ୍ତ ଶୁକ୍ର ବୃଦ୍ଧି ହୁଏ ଏବଂ ଶାନ୍ତି ଜନ୍ମେ ।

# ବେଗୁନିଆ (ନିର୍ଗୁଣ୍ଡୀ)

ନିର୍ଗୁଣ୍ଡିକୁ ଉତ୍କଳରେ ବେଗୁନିଆ, ଡାକ୍ତରୀରେ ଭିଟେକସ ଟ୍ରାଇଫୋଲିଆ ଏବଂ ସଂସ୍କୃତରେ ସିନ୍ଧୁବାର, ସନ୍ଦୁର୍କ, ସିନ୍ଦୁବାରକ, ନିର୍ଗୁଣ୍ଡୀ, ଇନ୍ଦ୍ରାଣୀ, କାସନାଶିନୀ, ପୌଲୋମୀ ଓ ବିସୁନ୍ଧକ ପ୍ରଭୃତି କହନ୍ତି ।

## ଆୟୁର୍ବେଦୋକ୍ତ ଗୁଣ

ବେଗୁନିଆ କଟୁତିକ୍ତ କଷାୟ ରସ, ଉଷ୍ଣବୀର୍ଯ୍ୟ, କେଶ ଓ ଚକ୍ଷୁର ହିତକାରକ, ସ୍ମୃତିଶକ୍ତି ବର୍ଦ୍ଧକ, ଅଗ୍ନିଦୀପକ, ମେଧାଜନକ ଓ ବର୍ଣ୍ଣବର୍ଦ୍ଧକ ଏବଂ କୃମି, ପ୍ଳୀହା, ଉଦରାମୟ, ଆଧ୍ମାନ (ପେଟ ଫାମ୍ପିବା), ଗୁଳ୍ମ, ଶୂଳ, ଆମଦୋଷ, କୁଷ୍ଠ, ବିଚର୍ଚ୍ଚିକା, ବ୍ରଣ, କଣ୍ଠରୋଗ, ବିଷଦୋଷ, ଅରୁଚି, ଜ୍ୱର, ଗୃଧସୀବାତ, ନାସାରୋଗ, କାସ, ଶ୍ୱାସ, ଶୋଥ, କଣ୍ଡୁ, ଦଦ୍ରୁ, ସନ୍ଧିବାତ, ଗଣ୍ଠିବାତ, ଆମବାତ, ପକ୍ଷାଘାତ ଓ ଯକ୍ଷ୍ମାରୋଗ ପ୍ରଭୃତିର ବିନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କୌଣସି ବ୍ୟକ୍ତିର ଆଣ୍ଠୁ, ଗଣ୍ଠି ପ୍ରଭୃତି କୌଣସି ପ୍ରକାର ବାତ ଦୋଷରୁ ଫୁଲି ଅତ୍ୟନ୍ତ ଯନ୍ତ୍ରଣା ଦେଉଥିଲେ କିଛି ବେଗୁନିଆ ପତ୍ରକୁ ଆଣି ଅଳ୍ପ ଛେଚି ଉଷୁମ କରି ସେହି ସ୍ଥାନରେ ଦେଇ ଖଣ୍ଡିଏ ପଟି ବାନ୍ଧିଦେଲେ ହଠାତ୍ ବାତବେଦନା ଓ ଫୁଲା ଭଲ ହୁଏ ।

(ଖ) ବେଗୁନିଆ ପତ୍ର ରସ ସଙ୍ଗେ ଅଳ୍ପ ମହୁ ମିଶାଇ ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ କଣ୍ଠସ୍ୱର ଅତ୍ୟନ୍ତ ମଧୁର ଅର୍ଥାତ୍ ବୀଣାତୁଲ୍ୟ ହୁଏ ଏବଂ ସମସ୍ତ ପ୍ରକାର କଣ୍ଠରୋଗ ଭଲ ହୋଇଯାଏ ।

(ଗ) ବେଗୁନିଆ ପତ୍ର ରସ ନାକରେ ପକାଇଲେ ଅସାଧ୍ୟ ରୋଗ ସହଜରେ ଭଲ ହୁଏ ।

(ଘ) ବେଗୁନିଆ ପତ୍ର ରସକୁ ରାଶିତେଲ ସଙ୍ଗେ ପାକ କରି ସେହି ତେଲକୁ କର୍ଣ୍ଣରେ ପକାଇଲେ କର୍ଣ୍ଣଶୂଳ, କର୍ଣ୍ଣରୁ ପୂଜସ୍ରାବ, କର୍ଣ୍ଣନାଦ ଓ କର୍ଣ୍ଣବଧିରତା ଆଦି ଛାଡ଼ିଯାଏ ।

# ବେଣା

ବେଣାକୁ ଡାକ୍ତରୀରେ ଆଣ୍ଡ୍ରୋ ଫୋଗୋନ୍ ମୁରିକାଟମ୍, ଇଂରାଜୀରେ ଫ୍ରାଗ୍ରାଣ୍ଟ ଗ୍ରାସ ଏବଂ ସଂସ୍କୃତରେ ଉଶୀର, ଲାମଜ୍ଜକ, ସୁନୀଳ, ଲବ, ଲଘୁ, ଇଷ୍ଟକାପଥ, ଅବଦାହନ, ବହୁମୂଳକ, ସୈବ୍ୟ, ଅମୃଣାଳ, ଅଭୟ, ସମଗନ୍ଧକ, ଚିରଣ, ବୀରଭଦ୍ର, କଟାୟନ, ବୀର, ବୀରତରୁ, ଦାହହରଣ ଓ ନଳଦ ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

ବେଣାଚେର ମଧୁର ତିକ୍ତରସ, ଲଘୁପାକ, ଶୀତଳ, ସୁଗନ୍ଧ, ସ୍ତମ୍ଭକ, ପରିପାଚକ ଓ ମସ୍ତିଷ୍କ ଶୀତଳ କାରକ ଏବଂ ଜ୍ୱର, କଫ, ପିତ୍ତ, ତୃଷ୍ଣା, ବମନ, ଶିରୋବ୍ୟଥା, ମତ୍ତତା,

ଦାହ, ବ୍ରଣ, ରକ୍ତଦୋଷ, ମେଦଦୋଷ, ବିସର୍ପ, ମୂତ୍ରକୃଚ୍ଛ୍ର ଓ କାମଳ ରୋଗ ପ୍ରଭୃତିର ନିବାରକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବେଣାଚେରକୁ ରାଶିତେଲରେ ଭିଜାଇ ସାତଦିନ ପରେ ତହିଁରୁ ଛାଣି ସେହି ତେଲକୁ ମସ୍ତକରେ ମାଲିସ କଲେ ସବୁପ୍ରକାର ମସ୍ତକ ବେଦନା ଦୂର ହୋଇ ମସ୍ତିଷ୍କ ଶୀତଳ ରହେ ।

(ଖ) କୌଣସି ବ୍ୟକ୍ତିର ମୁଣ୍ଡ ଅତ୍ୟନ୍ତ ଗରମ ହୋଇଥିଲେ ହଠାତ୍ ବେଣାଚେରକୁ ଆଣି ଜଳରେ ବାଟି ତାହାକୁ ମସ୍ତକରେ ଲେପନ କଲେ ତାହା ଶୀଘ୍ର ନିବାରିତ ହୁଏ ।

(ଗ) ବେଣାଚେରକୁ ଗୋମୂତ୍ର ସଙ୍ଗରେ ବାଟି ସାତପାନ ସେବନ କଲେ କାମଳ ରୋଗ ପ୍ରଶମିତ ହୁଏ ।

## ବେତ

ବେତକୁ ଡାକ୍ତରୀରେ କାଲାମସ୍ ରୋଟଙ୍ଗ୍ ଏବଂ ସଂସ୍କୃତ ଭାଷାରେ ବିଦୁଳ. ବେତସ, ରଥ, ନମ୍ରକ, ଗଣ୍ଡୁଳ, ବାଣୀର. ଅଭ୍ରପୁଷ୍ପ ଓ ଶୀତ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ବେତ ମଧୁର କଟୁରସ, ଶୀତଳ, ଅଗ୍ନିବର୍ଦ୍ଧକ, ପିତ୍ତକାରକ ଓ ରୁଚିକର ଏବଂ ରକ୍ତପିତ୍ତ ଓ ଭୂତାବେଶରେ ଉପକାରୀ ଅଟେ ।

ବେତର ପତ୍ର କଟୁ ତିକ୍ତ ଅମ୍ଳରସ, ଶୀତଳ, ଲଘୁପାକ, ମଳମୂତ୍ରାଦିର ବିରେଚକ ଓ ବାୟୁବର୍ଦ୍ଧକ ଏବଂ କଫ, ପିତ୍ତ ଓ ରକ୍ତଦୋଷରେ ହିତକର ଅଟେ । ବେତର ଅଗ୍ରଭାଗ ବା ବେତକନ୍ଦା ମଧୁର ତିକ୍ତରସ, ଅଗ୍ନିବର୍ଦ୍ଧକ ଓ ରୁଚିକର ଏବଂ ରକ୍ତପିତ୍ତ, ଦାହ, ବାୟୁ, କଫ, ଅର୍ଶ, ଶୋଥ, ମୂତ୍ରକୃଚ୍ଛ୍ର, ବିସର୍ପ, ଅଶ୍ମରୀ ଓ ଯୋନିରୋଗରେ ବିଶେଷ ଉପକାରୀ ଅଟେ ।

ବେତକୋଳି ଅମ୍ଳ ମଧୁର କଷାୟରସ, ପିତ୍ତବର୍ଦ୍ଧକ, ରୁକ୍ଷ ଓ ପାଚକ ଏବଂ କଫ ଓ ରକ୍ତଦୋଷ ନିବାରକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ବେତଗଛର କନ୍ଦାକୁ ଆଣି ଘିଅରେ ଭାଜି ଦୁଇ ତିନିଥର ଭକ୍ଷଣ କଲେ ବାତପିତ୍ତ ଶାନ୍ତ ହୋଇ ମସ୍ତିଷ୍କ ସ୍ଥିର ରହେ । ନିୟମିତ ଭାବେ ପ୍ରତ୍ୟହ ଭକ୍ଷଣ କଲେ ଦେହରେ କୌଣସି ପ୍ରକାର ରୋଗ ପ୍ରବେଶ କରି ପାରେ ନାହିଁ ।

(ଖ) ବେତକୋଳି ରସ ଓ ଅଁଳା ରସ ଏ ଦୁହିଙ୍କି ଏକତ୍ର କରି ତହିଁରେ ଚିନି ବା ମିଶ୍ରିଗୁଣ୍ଡା ପ୍ରକ୍ଷେପ ଦେଇ ସାତପାନ ସେବନ କଲେ ଅସାଧ୍ୟ ମେହ, ପ୍ରମେହ ଓ ଧାତୁକ୍ଷୟ ପ୍ରଭୃତି କୁତ୍ସିତ ରୋଗମାନ ଶୀଘ୍ର ନିବାରିତ ହୁଏ ।

# ଭୂଇଁ ନିମ୍ବ

ଭୂଇଁନିମ୍ବକୁ ଡାକ୍ତରୀରେ ପ୍ଲାଣ୍ଟ ଅଗାଥେଟେସ୍ ଏବଂ ସଂସ୍କୃତରେ କିରାତତିକ୍ତ, ଭୂମିନିମ୍ବ, କୈରାତ, କଟୁତିକ୍ତ, କିରାତକ, କାଣ୍ଡତିକ୍ତ, ଅନାର୍ଯ୍ୟ ତିକ୍ତ ଓ ରାମସେନକ କହନ୍ତି ।

## ଆୟୁର୍ବେଦୋକ୍ତ ଗୁଣ

ଭୂଇଁନିମ୍ବ ସାରକ, ରୁକ୍ଷ, ଶୀତଳ, ତିକ୍ତ ରସ ଓ ଲଘୁ ଏବଂ ଯାବତୀୟ ପ୍ରକାର ଜ୍ୱର, କାସ, ଶ୍ଳେଷ୍ମ, ମଳବଦ୍ଧତା, କଫ, ପିତ୍ତ, ଶୋଥ, ଦାହ, ରକ୍ତଦୁଷ୍ଟି, ତୃଷ୍ଣା, କୁଷ୍ଠ, ବ୍ରଣ ଓ କୃମି ପ୍ରଭୃତି ରୋଗନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଏକଭରି ଭୂଇଁନିମ୍ବ ଆଣି ଦରକୁଟା କରି ଏକପାଆ ଜଳରେ ସିଝାଇ ଅବଶିଷ୍ଟ ଏକଛଟାଙ୍କି ଥାଉଁ ଓହ୍ଲାଇ ସେହି କ୍ୱାଥ ତିନିଭାଗ କରି ପ୍ରତି ଭାଗରେ ଅଳ୍ପ ମହୁ ମିଶାଇ ତିନିବେଳା ପର୍ଯ୍ୟନ୍ତ ଏହି ତିନି ପାନକୁ ସେବନ କଲେ ଯାବତୀୟ ଜ୍ୱର ହଠାତ୍ ଭଲ ହୁଏ । ଏହି ଔଷଧ ଦେଲେ ନାଡ଼ୀ ଦେଖିବା, ଜ୍ୱର ଚିହ୍ନିବା ଦରକାର ହୁଏ ନାହିଁ । ଏହା ସେବନ କଲେ କିଛିଦିନ ପର୍ଯ୍ୟନ୍ତ ଖଟା ଓ ମିଠା ଖାଇବା ନିଷେଧ ।

(ଗ) କଞ୍ଚା ହେଉ ବା ଶୁଖିଲା ହେଉ ଯେ କୌଣସି ପ୍ରକାର ଭୂଇଁନିମ୍ବ ଗଛକୁ ଆଣି ଜଳରେ ବାଟି ତିନିଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ କଣ୍ଡୁ, ଦଦ୍ରୁ, କାଛୁ ଓ ମଟଳା ପ୍ରଭୃତି ଯାବତୀୟ ଚର୍ମରୋଗ ଶୀଘ୍ର ଭଲ ହୁଏ ।

# ମନ୍ଦାର

ମନ୍ଦାରକୁ ଡାକ୍ତରୀରେ ହବିସ୍‌କସ୍ ରୋଜ, ସିନେନସିସ୍ ଓ ଶ୍ୱେତ ମନ୍ଦାରକୁ ଗ୍ୱଇନା ରୋଜ୍ ଏବଂ ସଂସ୍କୃତରେ ଜବା, ଓଡ୍ରପୁଷ୍ପ, ହରିବଲ୍ଲଭା, ଓଡ୍ରାଖ୍ୟା, ରକ୍ତପୁଷ୍ପା, ଅର୍କପ୍ରିୟା, ରାଗପୁଷ୍ପୀ, ପ୍ରତିକା, ଜପା, ତ୍ରିସନ୍ଧ୍ୟା ଓ ଅରୁଣ ପ୍ରଭୃତି କୁହାଯାଏ ।

ରକ୍ତ ଓ ଶ୍ୱେତ ଭେଦରେ ମନ୍ଦାର ଦୁଇ ପ୍ରକାର । ରକ୍ତ ମନ୍ଦାର ଗୁଣରେ ଅଧିକ ଓ ଶ୍ୱେତମନ୍ଦାର ଗୁଣରେ ମଧ୍ୟମ ଅଟେ । ରକ୍ତବର୍ଣ୍ଣ ମନ୍ଦାରଫୁଲ ଗଛଦ୍ୱାରା ବହୁତ ପ୍ରକାର ଉପାକାର ମିଳେ ।

### ଆୟୁର୍ବେଦୋକ୍ତ ଗୁଣ

ମନ୍ଦାରଫୁଲ କଟୁରସ, ଉଷ୍ଣବୀର୍ଯ୍ୟ, ଶୀତଳ ଓ କୃମିଜନକ ଏବଂ ବାୟୁ, କଫ, କୃମି, ମୁଣ୍ଡଟାଙ୍ଗାରା ହେବା ଓ କେଶରୋଗ ବିନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଏକ ଛଟାଙ୍କି ଜଳରେ ଦୁଇତୋଳା ମନ୍ଦାର ପତ୍ରକୁ ଭଳକରି ଚକଟି ଲାଳପ୍ରାୟ ହେଲେ ତାହାକୁ ଛାଣି ତାହା ସଙ୍ଗରେ ଅର୍ଦ୍ଧତୋଳା ଚିନି ମିଶାଇ ତିନିପାନ ସେବନ କଲେ ସକଳ ପ୍ରକାର ମେହ ରୋଗ ଆରୋଗ୍ୟ ହୁଏ ।

(ଖ) ମନ୍ଦାରଫୁଲ ଓ ଲୌହମଳ ଏ ଦୁହିଙ୍କି ଏକତ୍ର ବାଟି ପ୍ରତ୍ୟହ ସ୍ନାନପୂର୍ବରୁ ମୁଣ୍ଡରେ ଲଗାଇ କିଛିକ୍ଷଣ ପରେ ମୁଣ୍ଡ ଧୌତ କଲେ ମସ୍ତକର କେଶ କଦାପି ପାଚେ ନାହିଁ ।

(ଗ) ମନ୍ଦାରଫୁଲକୁ କାଞ୍ଜି ରସରେ ବାଟି ତହିଁରୁ ଅର୍ଦ୍ଧତୋଳା ପରିମାଣରେ ନେଇ ସାତପାନ ସେବନ କଲେ ସ୍ତ୍ରୀମାନଙ୍କର ରଜୋରୋଧ ବା କଷ୍ଟରଜଃ ଦୋଷ ବିନାଶ ହୋଇ ସହଜରେ ରଜଃ ନିର୍ଗତ ହୋଇଯାଏ ।

(ଘ) ମନ୍ଦାର ପତ୍ରକୁ ଶୁଖାଇ କୁଟି ଚୂର୍ଣ୍ଣକରି ସେହି ଚୂର୍ଣ୍ଣରୁ ଅତ୍ୟଳ୍ପ ନେଇ ଯେ କୌଣସି ପ୍ରକାର କ୍ଷତ ଉପରେ ପକାଇଲେ ସେ ସବୁ କ୍ଷତ ଅଳ୍ପଦିନ ମଧ୍ୟରେ ଶୁଷ୍କ ହୋଇଯାଏ ।

(ଙ) ଅର୍ଦ୍ଧସେର ଗବ୍ୟଦୁଗ୍ଧ ସଙ୍ଗରେ ପାଞ୍ଚଗୋଟି ଶ୍ୱେତମନ୍ଦାର ଫୁଲ ସିଦ୍ଧକରି ସାତପାନ ସେବନ କଲେ ସ୍ତ୍ରୀମାନଙ୍କର ଶ୍ୱେତପ୍ରଦର ରୋଗ ବିନାଶ ପାଏ ।

## ମୁଥା

ମୁସ୍ତକକୁ ଉତ୍କଳରେ ମୁଥା, ଡାକ୍ତରୀ ଭାଷାରେ ସାଇପ୍ରସ୍ ରୋଟନ୍‌ଡସ୍ ଏବଂ ସଂସ୍କୃତରେ ଭଦ୍ର, ଭଦ୍ରମୁସ୍ତକ, ଗାଙ୍ଗେୟ, ଶ୍ରୀଭଦ୍ରା, ମୁସ୍ତା, ମୁସ୍ତକ, କୁରୁକନ୍ଦ, ରାଜକେଶରୁ, ଗୁନ୍ଦ୍ର, କ୍ରୋଧ, ନାଗର ଓ କସେରୁକ ପ୍ରଭୃତି କୁହାଯାଏ ।

ମୁଥା ଦୁଇ ପ୍ରକାର । ସାଧାରଣ ମୁଥାକୁ ମୁଥା ଏବଂ ଅତି ବଡ଼ ବଡ଼ ଓ ସୁବାସିତ ମୁଥାକୁ ଭଦ୍ରମୁଥା ବୋଲି କହନ୍ତି । ଉଭୟ ପ୍ରକାର ମୁଥା ଗୁଣରେ ପ୍ରାୟ ସମାନ ।

### ଆୟୁର୍ବେଦୋକ୍ତ ଗୁଣ

ଉଭୟ ପ୍ରକାର ମୁଥା ମଧୁର, ତିକ୍ତ, କଷାୟ ରସ, ଶୀତଳ, ପାଚକ, ଅଗ୍ନିବର୍ଦ୍ଧକ ଓ ମଳରୋଧକ ଏବଂ ଜ୍ୱର, ବାୟୁ, ପିତ୍ତ, ଅତିସାର, ଗ୍ରହଣୀ ଓ ଶିରଃପୀଡ଼ା ନିବାରକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ମୁଥା, ଗୋଲମରିଚ, ଶୁଣ୍ଠି ଓ ହରିଡ଼ା ଏହି ଚାରିଦ୍ରବ୍ୟକୁ ସମାନଭାଗରେ ଆଣି ଜଳରେ ସିଦ୍ଧକରି ଅଷ୍ଟାବଶେଷ ରଖି ଓହ୍ଲାଇ ଛାଣି ସେହି ସିଦ୍ଧଜଳ ସଙ୍ଗରେ ଅଳ୍ପ ମହୁ ପ୍ରକ୍ଷେପ ଦେଇ ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ସମସ୍ତ ପ୍ରକାର କଣ୍ଠରୋଗ ଭଲ ହୁଏ ।

(ଖ) କେତେଗୁଡ଼ିଏ ମୁଥା ଆଣି ଛେଚି ତହିଁରୁ ରସ ବାହାର କରି ସେହି ରସ ସଙ୍ଗରେ ଅଳ୍ପ ମିଶ୍ରିଗୁଣ୍ଡା ମିଶାଇ ୨/୩ ପାନ ସେବନ କଲେ ସବୁପ୍ରକାର ଝାଡ଼ା ନିବାରିତ ହୁଏ ।

(ଗ) ମୁଥାକୁ ଜଳରେ ସିଝାଇ ସେହି କ୍ୱାଥ ସଙ୍ଗରେ ଅଳ୍ପ ମହୁ ମିଶାଇ ସାତପାନ ସେବନ କଲେ ବାୟୁପିତ୍ତ ସଂଯୁକ୍ତ ଜ୍ୱର ଶୀଘ୍ର ଦୂର ହୁଏ ।

(ଘ) ମୁଥାକୁ ଛେଚି ତହିଁରୁ ରସ ବାହାର କରି ସେହି ରସ ସଙ୍ଗରେ ଅଳ୍ପ ସୈନ୍ଧବ ଲୁଣର ଗୁଣ୍ଡା ମିଶାଇ ସେବନ କଲେ ଅଗ୍ନିମାନ୍ଦ୍ୟ ରୋଗ ଦୂର ହୁଏ ।

(ଘ) ମୁଥାରସ ସଙ୍ଗରେ ପୋଟଳପତ୍ର ରସ ମିଶାଇ ତହିଁରେ ଅଳ୍ପ ମିଶ୍ରିଗୁଣ୍ଡା ପ୍ରକ୍ଷେପ ଦେଇ ୨/୩ ପାନ ସେବନ କଲେ ପିତ୍ତ ପ୍ରକୋପ ଶାନ୍ତି ହୁଏ ।

(ଙ) ମୁଥାରସ ସଙ୍ଗରେ ପିତାକୋରୁଆ ରସ ମିଶାଇ ତହିଁରେ ମିଶ୍ରିଗୁଣ୍ଡା ପ୍ରକ୍ଷେପ ଦେଇ ୨/୩ ପାନ ସେବନ କଲେ ସବୁପ୍ରକାର ଅତିସାର ରୋଗ ନିବାରିତ ହୁଏ ।

(ଚ) ମୁଥାରସ ସଙ୍ଗରେ ବେତକନ୍ଦା ରସ ମିଶାଇ ମୁଣ୍ଡରେ ମାଲିସ୍ କଲେ ବାୟୁ ପିତ୍ତ ଜନିତ ଶିରଃପୀଡ଼ା ନିବାରିତ ହୁଏ ।

## ଯୁଆଣୀ

ଯୁଆଣୀକୁ ଡାକ୍ତରୀରେ ଆଜାଭା ସୀଡସ୍ ଏବଂ ସଂସ୍କୃତରେ ଯମାନୀ, ଯବାନିକା, ବ୍ରହ୍ମଦର୍ଭା, ଭୂତିକ, ଦୀପ୍ୟକ, କ୍ଷେତ୍ରଯମାନୀ, ଦୀପ୍ୟା, ଉଗ୍ରଗନ୍ଧା ଓ ଯବସହ୍ୟା ପ୍ରଭୃତି କୁହାଯାଏ ।

ଆୟୁର୍ବେଦୋକ୍ତ ଗୁଣ

ଯୁଆଣୀ କଟୁ, ତିକ୍ତରସ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ଲଘୁପାକ, ଅଗ୍ନିବର୍ଦ୍ଧକ, ରୁଚିକର, ପାଚକ, ପିତ୍ତବର୍ଦ୍ଧକ, ବାୟୁନାଶକ, କଫ ଓ ଶୁକ୍ରର ହାନିକାରକ ଏବଂ ଗୁଳ୍ମ, ପ୍ଳୀହା, ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଉଦରୀ, କୃମି, ଶୂଳ ଓ ଆନାହ ପ୍ରଭୃତି ରୋଗରେ ଉପକାରକ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଯୁଆଣୀ ଓ ଗୁଡ଼ ଏକତ୍ର ବାଟି ତହିଁରୁ ଅର୍ଦ୍ଧତୋଳା ଲେଖାଏଁ ସାତଦିନ ଯାଏ ପ୍ରତ୍ୟହ ଦୁଇବେଳା ସେବନ କରି ଭଲ ଖାଦ୍ୟ ଖାଇଲେ ସାତଦିନ ମଧ୍ୟରେ ଆମବାତ ଭଲ ହୁଏ ।

(ଖ) ଯୁଆଣୀକୁ କୁଟି ଉତ୍ତମରୂପେ ଗୁଣ୍ଡକରି ସେହି ଗୁଣ୍ଡରୁ ଭ୧ରି ଓଜନରେ ନେଇ ପ୍ରତ୍ୟହ ଶୀତଳ ଜଳ ସଙ୍ଗରେ ସେବନ କଲେ କୃମିରୋଗ ବିନାଶ ହୁଏ ।

(ଗ) ଯୁଆଣୀ ଗୁଣ୍ଡ ସଙ୍ଗରେ ହରିଦ୍ରା ଗୁଣ୍ଡ ମିଶାଇ ସାତପାନ ସେବନ କଲେ ଆମ୍ବିଳା ହାକୁଟି, ବଦହଜମୀ ଝାଡ଼ା ଓ ଅଗ୍ନିମାନ୍ଦ୍ୟ ପ୍ରଭୃତି ରୋଗ ଶୀଘ୍ର ଦୂର ହୁଏ ।

(ଙ) ଯୁଆଣୀ ଓ ସୈନ୍ଧବଲୁଣ ଏକତ୍ର କୁଟି ଗୁଣ୍ଡ କରି ସେହି ଗୁଣ୍ଡରୁ ଭ୨ରି ଓଜନରେ ନେଇ ଉଷ୍ଣଜଳରେ ଗୋଳି କିଛିଦିନ ସେବନ କଲେ ଉଦରର ସମସ୍ତ ପ୍ରକାର ବାୟୁ ବିନାଶ ପାଏ ।

(ଙ) ଯୁଆଣୀ, ଶୁଣ୍ଠୀ, ଗୋଲମରିଚ, ପିପ୍‌ପଳୀ ଓ ସୈନ୍ଧବଲୁଣ ସମାନ ଭାଗରେ ଆଣି ଏକତ୍ର କୁଟି ଚୂର୍ଣ୍ଣ କରିବ । ସେହି ଚୂର୍ଣ୍ଣରୁ ଅଳ୍ପ ପରିମାଣରେ ନେଇ ଗରମଜଳରେ ଗୋଳି ସେବନ କରାଇଲେ ଶୂଳ ରୋଗୀର ଉଦର ଯନ୍ତ୍ରଣା ଶୀଘ୍ର ନିବାରିତ ହୁଏ । କୌଣସି ଲୋକର ପେଟ ଫାମ୍ପିଥିଲେ ମଧ୍ୟ ଏହି ଉପାୟ ଦ୍ୱାରା ଶୀଘ୍ର ଭଲ ହୁଏ ।

(ଚ) ଯୁଆଣୀକୁ ଜଳରେ ବାଟି ତହିଁରେ ଅଳ୍ପ ଗୋଲମରିଚ ଗୁଣ୍ଡ ମିଶାଇ ସାତପାନ ସେବନ କଲେ ମୁଖର ଅରୁଚି ନିବାରିତ ହୋଇ ଖାଦ୍ୟଦ୍ରବ୍ୟରେ ରୁଚି ଜନ୍ମେ ।

## ରାଶି (ତିଳ)

ରାଶିକୁ ଖସା, ତିଳ, ଡାକ୍ତରୀରେ ସିସାମୁମ୍ ଇଣ୍ଡିକାମ୍ ଏବଂ ସଂସ୍କୃତରେ ସ୍ନେହଗର୍ଭ, ପବିତ୍ର, ହେମଧାନ୍ୟ, ପିତୃତର୍ପଣ, ପୂତଧାନ୍ୟ ଓ ସ୍ନେହପୁର ପ୍ରଭୃତି କୁହାଯାଏ ।

ତିଳ ଚାରିପ୍ରକାର – ଶ୍ୱେତ, କୃଷ୍ଣ, ରକ୍ତ ଓ ବନ୍ୟଜାତ । ଏହି ଚାରି ପ୍ରକାର ତିଳ ମଧ୍ୟରୁ କୃଷ୍ଣତିଳ ସର୍ବଶ୍ରେଷ୍ଠ, ଶ୍ୱେତ ତିଳ ମଧ୍ୟମ ଓ ଅନ୍ୟାନ୍ୟ ତିଳ ନିକୃଷ୍ଟ ।

### ଆୟୁର୍ବେଦୋକ୍ତ ଗୁଣ

ତିଳ ତିକ୍ତ ମଧୁର କଷାୟ ରସ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ, କଟୁବିପାକ, ବାୟୁ ନାଶକ, ଶୁକ୍ରଜନକ, ବ୍ରଣରୋଗ ବିନାଶକ, ସ୍ତନ୍ୟର ହାନିକର ଓ ମୂତ୍ରବିନାଶକ ଏବଂ ବଳ, ଅଗ୍ନି ଓ ବର୍ଣ୍ଣ ବୃଦ୍ଧିକର ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କୃଷ୍ଣତିଳ ୧ ଭରିକୁ ନାରୀ ଦୁଗ୍ଧରେ ବାଟି ପୁଣି କିଛି ନାରୀ ଦୁଗ୍ଧ ମିଶାଇ ପିଲାମାନଙ୍କୁ ଅଳ୍ପ ଅଳ୍ପ ପାନ କରାଇଲେ ବାନ୍ତି ନିବାରିତ ହୁଏ ।

(ଖ) କୃଷ୍ଣତିଳକୁ ଜଳରେ ବାଟି ଅଳ୍ପ ମିଶ୍ରିଗୁଣ୍ଡା କିମ୍ବା ଚିନି ମିଶାଇ ତହିଁରୁ ଅର୍ଦ୍ଧତୋଳା ପ୍ରମାଣରେ ୩ ପାନ ସେବନ କଲେ ରକ୍ତାତିସାର ରୋଗ ଭଲ ହୁଏ ।

(ଗ) କୃଷ୍ଣତିଳ ଓ ବିଡ଼ଙ୍ଗ ସମଭାଗରେ ଆଣି ଚୂର୍ଣ୍ଣକରି ତାହାର ନସ୍ୟ ଗ୍ରହଣ କଲେ ଅର୍ଦ୍ଧକପାଳୀ ବିନ୍ଧା ଶୀଘ୍ର ପ୍ରଶମିତ ହୁଏ ।

(ଘ) ଗ୍ରେପାଶୂନ୍ୟ କୃଷ୍ଣତିଳ ଓ ଗୋଖରମଞ୍ଜି ସମଭାଗରେ ଆଣି ଛେଳି ଦୁଗ୍ଧ ସହିତ ସିଦ୍ଧକରି ଛାଣି ଶୀତଳ କରି ସେଥିରୁ ଦୁଇ ତୋଳାରେ ଅଳ୍ପ ମହୁ ମିଶାଇ କ୍ରମେ ସେହିପରି ତିନିଦିନ ସେବନ କଲେ ସବୁପ୍ରକାର ଧ୍ୱଜଭଙ୍ଗ ରୋଗ ଭଲ ହୁଏ ।

# ଲାଜକୁଳୀ

ଲାଜକୁରୀ ବା ଲାଜକୁଳୀକୁ ଡାକ୍ତରୀରେ ମାଇମୋସା ପୁଆଡ଼ିକା ଏବଂ ସଂସ୍କୃତରେ ରକ୍ତପାଦୀ, ଲଜ୍ଜାଲୁ, ଶମୀପତ୍ର, ସମଙ୍ଗ, ଅଞ୍ଜଳିକାରିକା, ନମସ୍କାରୀ, ଖଦିରିକା ଓ ସଙ୍କୋଚନା ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ଲାଜକୁରୀ କଟୁରସ ଓ ଶୀତଳ ଏବଂ ପିତ୍ତାତିସାର, ଶୋଥ, ଦାହ, ବ୍ରଣ, ଶ୍ରମ, ଶ୍ୱାସ, କଫ, କୁଷ୍ଠ, ଯୋନିରୋଗ ଓ ରକ୍ତବିକାର ପ୍ରଭୃତି ରୋଗନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଲାଜକୁରୀ ପତ୍ରକୁ ଶୁଖାଇ କୁଟି ଚୂର୍ଣ୍ଣକରି ସେହି ଚୂର୍ଣ୍ଣରୁ ଅଳ୍ପ ନେଇ ଗବ୍ୟଦୁଗ୍ଧରେ ଗୋଳି ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇଥର ସେବନ କଲେ ମୂତ୍ରାଘାତ, ମୂତ୍ରକୃଚ୍ଛ୍ର, ଅଶ୍ମରୀ ଅର୍ଥାତ୍ ମୂତ୍ରନଳୀରେ ମାଂସବୃଦ୍ଧି ରୋଗ ଭଲ ହୁଏ ।

(ଖ) ଲାଜକୁରୀ ଗଛର ମୂଳକୁ ଆଣି ଜଳରେ ସିଝାଇ ସେହି ସିଝା ଜଳକୁ ସାତଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କଲେ ଅଶ୍ମରୀ, ମୂତ୍ରକୃଚ୍ଛ, ମୂତ୍ରାଘାତ ଓ ପ୍ରସବ ବାଧା ପ୍ରଭୃତି ରୋଗ ଭଲ ହୁଏ ।

(ଗ) ଲାଜକୁରୀ ଗଛର ମୂଳ ଓ ଗୋଲମରିଚ ଏକତ୍ର ଜଳରେ ବାଟି ତିନିପାନ ସେବନ କଲେ କାସ, ଶ୍ୱାସ, ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଉଦରାମୟ ଓ ଯାବତୀୟ ଝାଡ଼ା ଭଲ ହୁଏ ।

(ଘ) ଲାଜକୁରୀ ମୂଳକୁ ଜଳରେ ବାଟି ସର୍ପଦଂଶିତ ବ୍ୟକ୍ତିକି ପାନ କରାଇଲେ ତା ଦେହରୁ ହଠାତ୍ ସର୍ପବିଷ ଦୂର ହୁଏ । ଏହି ଉପାୟଦ୍ୱାରା ଅନ୍ୟାନ୍ୟ ବିଷାକ୍ତ ଜନ୍ତୁଙ୍କ ବିଷ ମଧ୍ୟ ବିନାଶ ପାଏ ।

(ଙ) ଲାଜଗୁରୀ ଗଛର ପତ୍ର ଗୁଡ଼ିଏ ଆଣି ଛେଚି ତହିଁରୁ ରସ ବାହାର କରି ସେହି ରସ ସଙ୍ଗେ ଅଳ୍ପ ମିଶ୍ରିଗୁଣ୍ଡା ପରୀକ୍ଷା ଦେଇ ସାତପାନ ପର୍ଯ୍ୟନ୍ତ ସେବନ କଲେ ମେହ, ପ୍ରମେହ, ସ୍ୱପ୍ନଦୋଷ, ଧାତୁ ପଡ଼ିବା, ଅବସାଦ ପ୍ରଭୃତି ଦୂର ହୁଏ ।

(ଚ) ଲାଜକୁରୀ ମୂଳକୁ ଘିଅରେ ଭାଜି କଳରେ ଜାକିଲେ ଦାନ୍ତମୂଳ ପୀଡ଼ା ଉଶ୍ୱାସ ହୁଏ ।

# ଶତାବରୀ

ଶତାବରୀକୁ ଉତ୍କଳରେ ଛତାଉରୀ, ଡାକ୍ତରୀରେ ଯ୍ୟାଜ୍ ପ୍ୟାରାଗସ୍ ରେସମୋସମ୍ ଏବଂ ସଂସ୍କୃତ ଭାଷାରେ ଶତାବରୀ, ଶତାମୂଳୀ, ଭୀରୁ, ବହୁସୁତା, ବରୀ, ନାରାୟଣୀ, ଶତପଦୀ, ପୀବରୀ ଓ ଶତବୀର୍ଯ୍ୟା ପ୍ରଭୃତି କୁହାଯାଏ ।

## ଆୟୁର୍ବେଦୋକ୍ତ ଗୁଣ

ଶତାବରୀ ମଧୁର, ତିକ୍ତ ରସ, ଶୀତଳ, ବଳକାରକ, ଶୁକ୍ରବର୍ଦ୍ଧକ, ସ୍ତନ୍ୟଜନକ, ବାତ ପିତ୍ତ କଫ ନାଶକ ଓ ରସାୟନ ଏବଂ ବାୟୁଜନିତ ପୀଡ଼ା, ହସ୍ତପାଦ ଜ୍ୱାଳା, ମେହ, ପ୍ରମେହ ଓ କ୍ଳାନ୍ତି ନାଶକ ଅଟେ ।

## ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ଶତାବରୀ ମୂଳକୁ ଜଳରେ ବାଟି ପିଆଇଲେ ପରିସ୍ରାପୋଡ଼ା ଶୀଘ୍ର ଭଲ ହୁଏ ।

(ଖ) ଶତାବରୀ ମୂଳକୁ ଆଣି ଗବ୍ୟଦୁଗ୍ଧ ସଙ୍ଗେ ବାଟି ତହିଁରୁ ଅଳ୍ପ କରିମାଣରେ ନେଇ ପିଆଇଲେ ଶିଶୁମାନଙ୍କର ପୁଅରୋଗ ଭଲ ହୁଏ ।

(ଗ) ଶତାବରୀ ରସକୁ କଞ୍ଚା ଗାଈଦୁଧ ସଙ୍ଗରେ ପନ୍ଦର ଦିନ ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରଭାତ କାଳରେ ସେବନ କଲେ ଅସାଧ୍ୟ ପ୍ରମେହ ରୋଗ ଭଲ ହୋଇଯାଏ ।

(ଘ) ଶତାବରୀ ରସ ୧ ଭରି ଗୁଳୁଚି ରସ ୧ଭରି ସଙ୍ଗରେ ଭ୧ରି ଓଜନର ଇକ୍ଷୁ ଗୁଡ଼ ମିଶାଇ ସେବନ କଲେ ବାତଜ୍ୱରାକ୍ରାନ୍ତ ଦୁର୍ବଳ ରୋଗୀ ଶୀଘ୍ର ଆରୋଗ୍ୟ ହୁଏ ।

(ଙ) ଶତାବରୀ ରସରେ ଅଁଳାକୁ ସିଝାଇ ସେହି ସିଝାଜଳ ଓ ସିଦ୍ଧ ଅଁଳାକୁ ଗବ୍ୟଦୁଗ୍ଧ ଓ ଚିନି ସଙ୍ଗରେ କିଛିଦିନ ସେବନ କଲେ ଶରୀରରେ ଅତ୍ୟନ୍ତ ବଳ ବୃଦ୍ଧି ହୁଏ ଓ ଦେହରେ ନୂତନ ରକ୍ତ ସଞ୍ଚାର ହୁଏ ।

(ଚ) ଶତାବରୀ ରସରେ ଶିମୂଳି ରସ ମିଶାଇ ତା ସଙ୍ଗରେ ଅଳ୍ପ ମିଶ୍ରିଗୁଣ୍ଡା ପ୍ରକ୍ଷେପ ଦେଇ କିଛିଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ମେହ, ପ୍ରମେହ, ସ୍ୱପ୍ନଦୋଷ, ଧାତୁକ୍ଷୟ ଓ ଧାତୁଦୌର୍ବଲ୍ୟ ପ୍ରଭୃତି ରୋଗମାନ ଅଳ୍ପଦିନ ମଧ୍ୟରେ ଭଲ ହୁଏ ।

# ସଜନା

ସଜନାକୁ ଇଂରାଜୀରେ ହର୍ସ ର୍ୟାଡିସ୍ ଟ୍ରୀ, ସଂସ୍କୃତରେ ଶିଗ୍ରୁ, ତୀକ୍ଷ୍ଣ ଗନ୍ଧକ, ଅକ୍ଷୀବ, ମୋଚକ ଓ ଶୋଭାଞ୍ଜନ ପ୍ରଭୃତି କହନ୍ତି ।

### ଆୟୁର୍ବେଦୋକ୍ତ ଗୁଣ

ସଜନା ମଧୁର, କଟୁତିକ୍ତ ରସ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ଲଘୁ, କଟୁବିପାକ, ଅଗ୍ନିଦୀପକ, ରୁକ୍ଷ, ରୁଚିକାରକ, କ୍ଷାରଯୁକ୍ତ, ଧାରକ, ଶୁକ୍ରବର୍ଦ୍ଧକ, ରକ୍ତପିତ୍ତ ପ୍ରକୋପ ଓ ନେତ୍ରର ଉପକାରକ ଏବଂ ବାୟୁ, କଫ, ଶୋଥ, କୃମି, ଅପଚୀ, ମେଦଦୋଷ, ବିଷ, ପ୍ଲୀହା, ଗୁଳ୍ମ, ଗଳଗଣ୍ଡ, ବ୍ରଣ, କ୍ଷତ, ପିତ୍ତ ଓ କୃମିନାଶକ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ସଜନାପତ୍ରର ରସକୁ ଯେ କୌଣସି ବେଦନା ସ୍ଥାନରେ ମାଲିସ କଲେ ତାହା ଶୀଘ୍ର ନିବାରିତ ହୁଏ ।

(ଖ) ସଜନାମଞ୍ଜିକୁ ଜଳ ସଙ୍ଗରେ ବାଟି କିମ୍ବା ଘୋରି ତାହାର ନସ୍ୟ ଗ୍ରହଣ କଲେ ଅସାଧ୍ୟ ଶିରୋପୀଡ଼ା ନିବାରିତ ହୁଏ ।

(ଗ) ସଜନାଗଛ ମୂଳର ଛେଲି ସଙ୍ଗରେ ଶ୍ୱେତ ସୋରିଷ ମିଶାଇ ଏକତ୍ର ବାଟି ପ୍ରଲେପ ଦେଲେ ବାୟୁ ଓ କଫ ଜନିତ କୋଷବୃଦ୍ଧିର ଉପଶମ ହୁଏ ।

(ଘ) ସଜାନାଗଛର ମୂଳ ଓ ଲୁହାମଳ ଏ ଦୁହିଙ୍କି ଏକତ୍ର ଜଳସଙ୍ଗରେ ବାଟି ଲଗାଇଲେ ଅସାଧ୍ୟ ବିଇଞ୍ଚ ଭଲ ହୁଏ ।

(ଙ) ସଜନା ମଞ୍ଜିକୁ ମହୁସଙ୍ଗରେ ଘୋରି ଚକ୍ଷୁରେ ଅଞ୍ଜନ ପ୍ରାୟ ଘେନିଲେ ସମସ୍ତ ପ୍ରକାର ଚକ୍ଷୁରୋଗ ନିବାରିତ ହୁଏ ।

(ଚ) ସଜନାଛେଲି ସଙ୍ଗରେ ସୋରିଷ ମିଶାଇ ଏକତ୍ର ବାଟି ତହିଁରୁ ଅର୍ଦ୍ଧଭରି ପ୍ରମାଣ ଦିନରେ ତିନିବାର ସେବନ କରି ତା ଉପରେ ଉଷ୍ଣଜଳ ପାନକଲେ ସ୍ତ୍ରୀମାନଙ୍କର ରଜଃ ପରିଷ୍କାର ହୋଇଯାଏ ।

(ଛ) ସଜନାପତ୍ର ରସ ସଙ୍ଗରେ ଲୁଣ ମିଶାଇ ଯାଦୁରେ ଘଷିଲେ ଯାଦୁ ଭଲ ହୋଇଯାଏ । ହାତର ଚମଦଳାରେ ଲଗାଇଲେ ଚମଦଳା ମଧ୍ୟ ଭଲ ହୁଏ ।

## ସାହାଡ଼ା

ସାହାଡ଼ାକୁ ଡାକ୍ତରୀରେ ଷ୍ଟେପଲିସ୍ ଆସ୍ପାର ଏବଂ ସଂସ୍କୃତରେ ଭୂତାବାସ, ପୀତଫଳ, ଖରଛଦ, ଶାଖୋଟ ଓ ଅସ୍ଥିକାର୍ଣ୍ଣ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ସାହାଡ଼ା ତିକ୍ତରସ, ଉଷ୍ଣବୀର୍ଯ୍ୟ, ପିତ୍ତକାରକ ଓ ବାୟୁନାଶକ, ସାହାଡ଼ାମଞ୍ଜି ବାତଶ୍ଳେଷ୍ମ, ଅତିସାର, କଫ, ରକ୍ତପିତ୍ତ, ଅର୍ଶ, କୁଷ୍ଠ ଓ ଧବଳ ପ୍ରଭୃତି ରୋଗ ନିବାରକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) କୌଣସି ବ୍ୟକ୍ତି ଦନ୍ତମୂଳ ଧରି ଅତ୍ୟନ୍ତ ବ୍ୟଥା ହେଉଥିଲେ ସାହାଡ଼ାଗଛର ଛେଲି ଆଣି ଜଳରେ ସିଝାଇ ସେହି ଜଳରେ କୁଳି କଲେ ତତ୍‌କ୍ଷଣାତ୍ ଦାନ୍ତମୂଳ ବ୍ୟଥା ନିବାରିତ ହୁଏ ।

(ଖ) ସାହାଡ଼ାଗଛ ମୂଳର ଛେଲି, ଗଛମଧ୍ୟର ବକଳା ଓ ପତ୍ର ଏହି ତିନିଙ୍କି ଖରାରେ ଶୁଖାଇ ଏକତ୍ର କୁଟି ସେହି ଚୂର୍ଣ୍ଣରୁ ଭ ୧ରି ଓଜନରେ ନେଇ ମହୁରେ ଖଲି ସାତଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ଅସାଧ୍ୟ ଅର୍ଶରୋଗ ଭଲ ହୁଏ ।

(ଗ) ପ୍ରତ୍ୟହ ସାହାଡ଼ା ଦାନ୍ତକାଠିରେ ଦାନ୍ତ ଘଷିଲେ କୌଣସି ଦିନ ଦାନ୍ତମୂଳରେ କିଛି ପୀଡ଼ା ହୁଏ ନାହିଁ କି ଯାବଜ୍ଜୀବନ ଦାନ୍ତ ପଡ଼େ ନାହିଁ । ଯେଉଁମାନଙ୍କର ଦନ୍ତଅର୍ଶ, ମୁଖବିକାର ଓ ପୀନସ ରୋଗ ଥିବ, ସେମାନେ ମଧ୍ୟ ଏହି ଉପାୟରେ ଯାବତୀୟ ଦନ୍ତ ଓ ନାସାରୋଗରୁ ଶୀଘ୍ର ଆରୋଗ୍ୟ ଲାଭ କରିବେ ।

(ଘ) ସାହାଡ଼ା କୋଳିର ମଞ୍ଜିକୁ ଗୋମୂତ୍ରରେ ଭଲରୂପେ ବାଟି ଲେପ ଦେଲେ ଅଳ୍ପଦିନ ମଧ୍ୟରେ ଧବଳଛଉ ଭଲ ହୁଏ ।

## ହରିଦ୍ରା

ହରିଦ୍ରାକୁ ଓଡ଼ିଆରେ ହଳଦି, ଡାକ୍ତରୀରେ କରକିଉମାଲଙ୍ଗ ଏବଂ ସଂସ୍କୃତରେ ହରିଦ୍ରା, ବାଞ୍ଚନୀ, ବରବର୍ଣ୍ଣିନୀ, ପୀତା, କୃମିଘ୍ନା, ଯୋଷିତପ୍ରିୟା, ହରବିଳାସିନୀ, ରଜନୀ ଓ ନିଶା ପ୍ରଭୃତି କୁହାଯାଏ ।

ହଳଦି ଚାରିପ୍ରକାର – ହରିଦ୍ରା, କର୍ପୂର ହରିଦ୍ରା, ବନ ହରିଦ୍ରା ଓ ଦାରୁ ହରିଦ୍ରା ।

### ଆୟୁର୍ବେଦୋକ୍ତ ଗୁଣ

ହଳଦି କଟୁତିକ୍ତ ରସ, ଉଷ୍ଣବୀର୍ଯ୍ୟ, ବର୍ଣ୍ଣବର୍ଦ୍ଧକ, ରକ୍ତ ପରିଷ୍କାରକ, ପିତ୍ତନାଶକ, ଦାହନିବାରକ, ରୁକ୍ଷ ଓ ଶାନ୍ତିକାରକ ଏବଂ କଫଜ, ବାତଜ ରୋଗ, କଣ୍ଡୁ, କୁଷ୍ଠ, ରକ୍ତଦୁଷ୍ଟି, ଚର୍ମଦୋଷ, କୃମି, ଶୋଥ, ପାଣ୍ଡୁ, ପ୍ରମେହ, ଅଗଚୀ, ପୀନସ, ଅରୁଚି ଓ ବିଷଦୋଷ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ହଳଦି, ସୈନ୍ଧବଲୁଣ, ମଧୁ ଓ ଘୃତ ଏସବୁ ଦ୍ରବ୍ୟକୁ ଏକତ୍ର ବାଟି ସେବନ କରାଇଲେ ସର୍ପବିଷ ବିନାଶ ହୁଏ ।

(ଖ) ମନୁଷ୍ୟ ଦେହରେ ସର୍ପବିଷ ଚହଟିଲେ (ସର୍ବାଙ୍ଗରେ ବ୍ୟାପିଲେ) ହଳଦିକୁ ଜଳରେ ସିଝାଇ ସଙ୍ଗେ ସଙ୍ଗେ ତାହାକୁ ପାନ କରାଇଲେ ସେହି ବ୍ୟକ୍ତିର ଦେହରୁ ଶୀଘ୍ର ବିଷ ବିନାଶ ହୁଏ ।

(ଗ) ହଳଦି ଗୋଳା ଜଳକୁ ଯୋକ କାମୁଡ଼ା ସ୍ଥାନରେ ବାରମ୍ବାର ଢାଳିଲେ ଯୋକ ବିଷ ବିନାଶ ହୁଏ ।

(ଘ) ପ୍ରତିଦିନ ରାତ୍ରରେ ହଳଦି ଲଗାଇଲେ କୃମି ବିନାଶ ହୁଅନ୍ତି ରକ୍ତ ମାଂସ ଓ ଚର୍ମ ଦୃଢ଼ ହୁଏ, ମନୁଷ୍ୟର ଶ୍ରୀବୃଦ୍ଧି ହୁଏ ।

(ଙ) ହଳଦିକୁ ଉତ୍ତମରୂପେ ବାଟି ତହିଁରେ ଚୂନ ମିଶାଇ ନିଆଁରେ ବସାଇ ଗରମ କରି ଭଗ୍ନସ୍ଥାନରେ ପ୍ରଲେପ ଦେଲେ ଭଗ୍ନସ୍ଥାନ ଯୋଡ଼ି ହୋଇଯାଏ ।

(ଚ) କଞ୍ଚାହଳଦି ରସ ସଙ୍ଗରେ ଗୋମୂତ୍ର ମିଶାଇ ପନ୍ଦରଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇବେଳା ସେବନ କଲେ ପାଣ୍ଡୁ, କାମଳ, ଶୋଥ, କୃମି, କଣ୍ଡୁ, କୁଷ୍ଠ, ଅପଚୀ ଓ ବିବିଧ ପ୍ରକାର ଚର୍ମରୋଗ ବିନାଶ ହୁଏ ।

(ଛ) ବଟାହଳଦି ଦ୍ୱାରା ଖଣ୍ଡେ ସରୁକନା ଭିଜାଇ ସେହି କନା ଦ୍ୱାରା ଚକ୍ଷୁକୁ ଛାପିଲେ ଆଖିଧରା, ଚକ୍ଷୁଗରମ, ବାତାଶ୍ରୁ ଓ ନେତ୍ରକୃମି ପ୍ରଭୃତି ସବୁପ୍ରକାର ନେତ୍ରରୋଗ ଅଳ୍ପଦିନ ମଧ୍ୟରେ ଭଲ ହୋଇଯାଏ ।

## ହରିଡ଼ା

ହରିଡ଼ାକୁ ଇଂରାଜୀରେ କେବୁଲିକ ମାଇରୋ ବେଲାନ, ଲାଟିନ୍‌ରେ ଟେରମିନାଲିୟା କେବୁଲା ଏବଂ ସଂସ୍କୃତରେ ହରିତକୀ, ଅଭୟା, ପଥ୍ୟା, କାୟସ୍ଥା, ପୂତନା, ଅମୃତା, ହୈମବତୀ, ଅବ୍ୟଥା, ଚେତକୀ, ଶ୍ରେୟସୀ, ଶିବା, ବୟସ୍ଥା, ବିଜୟା, ଜୀବନ୍ତୀ ଓ ରୋହିଣୀ ପ୍ରଭୃତି କୁହାଯାଏ । ଏହାର ଫଳ ସବୁ ଔଷଧରେ ବ୍ୟବହାର କରାଯାଏ ।

ହରିଡ଼ା ସାତପ୍ରକାର । ଯଥା – ୧- ବିଜୟା, ୨- ରୋହିଣୀ, ୩- ପୂତନା, ୪- ଅମୃତା, ୫- ଅଭୟା, ୬- ଜୀବନ୍ତୀ ଓ ୭ ଚେତକୀ ।

ଉପରୋକ୍ତ ସାତପ୍ରକାର ହରିଡ଼ା ମଧ୍ୟରୁ ବିଜୟା ସବୁଠାରୁ ଶ୍ରେଷ୍ଠ । ଏହା ସବୁ ରୋଗରେ ସବୁ ସ୍ଥଳରେ ନିର୍ବିଘ୍ନରେ ବ୍ୟବହାର କରାଯାଏ

### ଆୟୁର୍ବେଦୋକ୍ତ ଗୁଣ

ହରିଡ଼ା ପଞ୍ଚରସ ବିଶିଷ୍ଟ; ଯଥା – ଅମ୍ଳ, ମଧୁର, ତିକ୍ତ, କଟୁ ଓ କଷାୟ ରସ । ଏଥିରେ ଲବଣ ରସ ଆଦୌ ନାହିଁ । ଏହି ପଞ୍ଚରସ ମଧ୍ୟରୁ କଷାୟରସ ଅଧିକ ଭାବରେ ଥାଏ ।

ହରିଡ଼ା ରୁକ୍ଷ, ଉଷ୍ଣବୀର୍ଯ୍ୟ, ଅଗ୍ନିଦିପ୍ତିକର, ମେଧାଜନକ, ପାକରେ ମଧୁର, ରସାୟନ, ନେତ୍ର ହିତକର, ଲଘୁ, ଆୟୁଷ୍କର ଓ ମଳଭେଦକ ଏବଂ କାସ, ଶ୍ୱାସ, ପ୍ରମେହ, ଅର୍ଶ, କୁଷ୍ଠ, ଶୋଥ, କୃମି, ଉଦରରୋଗ, ସ୍ୱରବିକୃତି, ଗ୍ରହଣୀ, ମଳବିବର୍ଦ୍ଧନୀ, ବିଷମ ଜ୍ୱର,

ଗୁଳ୍ମ, ଆଧ୍ମାନ (ପେଟ ଫାମ୍ପିବା), ଘର୍ଦ୍ଦି, ତୃଷ୍ଣା, ହିକ୍‌କା, କଣ୍ଡୁ, କାମଳ, ହୃଦ୍‌ରୋଗ, ଶୂଳ, ଅନାହ, ଯକୃତ୍‌, ପ୍ଳୀହା, ଅଶ୍ମରୀ, ମୂତ୍ରକୃଚ୍ଛ୍ର ଓ ମୂତ୍ରାଘାତ ରୋଗର ପ୍ରଧାନ ଉପକାରକ ।

ହରିଡ଼ା ସର୍ବରୋଗହର ହେବାର କାରଣ

ହରିଡ଼ାରେ ମଧୁର, ତିକ୍ତ ଓ କଷାୟ ରସ ଥିବାରୁ ପିତ୍ତକୁ ଶାନ୍ତି କରେ । କଟୁ, ତିକ୍ତ, କଷାୟ ରସ ଥିବାରୁ କଫ ବିନାଶ କରେ ଏବଂ ଅମ୍ଳରସ ଥିବାରୁ ବାୟୁକୁ ବିନାଶ କରେ ।

ସେବନାନୁସାରେ ଗୁଣ

ବର୍ଦ୍ଧିତା ବର୍ଦ୍ଧୟତ୍ୟଗ୍ନି ପେକ୍ଷିତା ମଳଶୋଧିନୀ ।

ସ୍ୱିନ୍ନା ସଂଗ୍ରାହଣୀ ପଥ୍ୟା ଭୃଷ୍ଟା ପ୍ରୋକ୍ତା ତ୍ରିଦୋଷନୃତ୍‌ ।।

ଅର୍ଥ – ହରିଡ଼ାକୁ ଚ୍ୱେବାଇ କରି ଖାଇଲେ ଅଗ୍ନି ବୃଦ୍ଧି ହୁଏ । ପେଷଣ କରି ଅର୍ଥାତ୍‌ ବାଟି ଖାଇଲେ ମଳକୁ ଶୋଧନ କରେ (ଝାଡ଼ା କରାଏ) । ଜଳ ସଙ୍ଗରେ ସିଝାଇ ପାନ କଲେ ମଳସଂଗ୍ରହ ଅର୍ଥାତ୍‌ ଝାଡ଼ା ବନ୍ଦ କରେ ଏବଂ ନିଆଁରେ ପୋଡ଼ି କିମ୍ବା ଭାଜିକରି ଖାଇଲେ ତ୍ରିଦୋଷ ବିନାଶ କରେ ।

ହରିଡ଼ାକୁ ଲବଣ ସହିତ ସେବନ କଲେ କଫକୁ ବିନାଶ କରେ, କନ୍ଦ ବା ଚିନି ସଙ୍ଗେ ସେବନ କଲେ ପିତ୍ତକୁ ଶାନ୍ତି କରେ, ଘୃତ ସହିତ ସେବନ କଲେ ବାତକୁ ବିନାଶ କରେ ଏବଂ ଗୁଡ଼ ସଙ୍ଗେ ସେବନ କଲେ ସମସ୍ତ ପ୍ରକାର ରୋଗକୁ ବିନାଶ କରେ ।

ହରିଡ଼ାକୁ ବର୍ଷା ଋତୁରେ ଅର୍ଥାତ୍‌ ଆଷାଢ଼ ଓ ଶ୍ରାବଣ ମାସରେ ସୈନ୍ଧବ ଲବଣ ସଙ୍ଗରେ, ଶରତ ଋତୁରେ ଅର୍ଥାତ୍‌ ଭାଦ୍ରବ ଓ ଆଶ୍ୱିନ ମାସରେ କନ୍ଦ ବା ଚିନି ସଙ୍ଗରେ, ହେମନ୍ତ ଋତୁ ଅର୍ଥାତ୍‌ କାର୍ତ୍ତିକ ଓ ମାର୍ଗଶୀର ମାସରେ ଶୁଣ୍ଠୀ ଚୂର୍ଣ୍ଣ ସଙ୍ଗରେ, ଶୀତ ଋତୁ ଅର୍ଥାତ୍‌ ଫାଲ୍‌ଗୁନ ଓ ଚୈତ୍ର ମାସରେ ମହୁ ସଙ୍ଗରେ ଏବଂ ଗ୍ରୀଷ୍ମଋତୁ ଅର୍ଥାତ୍‌ ବୈଶାଖ ଓ ଜ୍ୟେଷ୍ଠ ମାସରେ ଗୁଡ଼ ସଙ୍ଗରେ ସେବନ କଲେ ରସାୟନ ଫଳ ମିଳେ । ଏହି ଉପାୟଦ୍ୱାରା କୌଣସି ରୋଗ ଶରୀରରେ ପ୍ରବେଶ କରି ପାରେ ନାହିଁ । ପୂର୍ବରୁ ଶରୀରରେ ଯେ କୌଣସି ପ୍ରକାର ବ୍ୟାଧିଥିଲେ ତାହା ଶୀଘ୍ର ଆରୋଗ୍ୟ ହୋଇଯାଏ ।

କେଉଁ କେଉଁ ବ୍ୟକ୍ତି ହରିଡ଼ା ସେବନର ଅଯୋଗ୍ୟ

ପଥଶ୍ରାନ୍ତ, ବଳହୀନ, ରୁକ୍ଷ ବା କ୍ଷୀଣକାୟ ବ୍ୟକ୍ତି, ଲଘଂନକାରୀ ଅର୍ଥାତ୍‌ ଉପବାସୀ ବ୍ୟକ୍ତି, ପିତ୍ତଧାତୁ ବିଶିଷ୍ଟ ବ୍ୟକ୍ତି, ଗର୍ଭବତୀ ସ୍ତ୍ରୀ ଏବଂ ରକ୍ତମୋକ୍ଷଣ ବ୍ୟକ୍ତିଙ୍କୁ ହରିଡ଼ା ସେବନ କରାଇବା ଅନୁଚିତ । ବିଜ୍ଞ ଚିକିତ୍ସକ ବୃନ୍ଦ ଏହା ହରିଡ଼ା ପ୍ରୟୋଗରେ ସର୍ବଦା ସ୍ମରଣ ରଖିଥାନ୍ତି ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ହରିଡ଼ାର ଉପର ଅଂଶ ରସକୁ କୁଟି ଚୂର୍ଣ୍ଣ କରି ସେହି ଚୂର୍ଣ୍ଣ ସଙ୍ଗରେ ଅଳ୍ପ ଗୁଡ଼ ମିଶାଇ ସେବନ କଲେ ଯାବତୀୟ ବାୟୁ ଓ ଶୂଳରୋଗ ଭଲ ହୁଏ ।

(ଖ) ହରିଡ଼ାକୁ ଜଳ ସଙ୍ଗେ ଘୋରି ଯେ କୌଣସି ଘାଆରେ ଲଗାଇଲେ ଶୀଘ୍ର ଶୁଖିଯାଏ ।

(ଗ) ହରିଡ଼ା ଚୂର୍ଣ୍ଣ ୧ ଭରି ନେଇ ଗରମ ଜଳ ସଙ୍ଗରେ ମିଶାଇ ସେବନ କଲେ ଝାଡ଼ା ପରିଷ୍କାର ହୁଏ ।

(ଘ) କିସମିସ୍ ୧ଭାଗ ଓ ହରିଡ଼ା ୨ ଭାଗ, ଏକତ୍ର ଅଳ୍ପ ଜଳରେ ବାଟି ମର୍ଦ୍ଦନପୂର୍ବକ ବରକୋଳି ମଞ୍ଜି ସଦୃଶ ବଟିକା ପ୍ରସ୍ତୁତ କରି କିଛିଦିନ ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରାତଃକାଳରେ ସେବନ କଲେ କାସ, ଶ୍ୱାସ, ଅରୁଚି, ଅଜୀର୍ଣ୍ଣ, ଜ୍ୱର, ତୃଷା, ବମନ, ରକ୍ତଦୋଷ, ପିତ୍ତବିକାର, ହୃଦ୍ରୋଗ, ପାଣ୍ଡୁ, କଣ୍ଡୁ, କୁଷ୍ଠ, ଗୁଳ୍ମ, ପ୍ଲୀହା, ପ୍ରମେହ ଓ ଅଗ୍ନିମାନ୍ଦ୍ୟ ପ୍ରଭୃତି ବିନଷ୍ଟ ହୁଏ ।

## ହିଞ୍ଜଳ

ହିଞ୍ଜଳକୁ ଡାକ୍ତରୀରେ ଇଞ୍ଜିନିୟା ଅକୁଟାଙ୍ଗୁଲା ଏବଂ ସଂସ୍କୃତରେ ଇଜ୍ଜଳ, ହିଜ୍ଜଳ, ନିଚୁଳ ଓ ଅମ୍ବୁଜ ପ୍ରଭୃତି କୁହାଯାଏ ।

### ଆୟୁର୍ବେଦୋକ୍ତ ଗୁଣ

ହିଞ୍ଜଳ କଟୁରସ, ମଳସଂଗ୍ରାହକ, ପବିତ୍ରତା କାରକ, ଉଷ୍ଣବୀର୍ଯ୍ୟ ଓ କଫପିତ୍ତ କାରକ ଏବଂ ଭୂତାବେଶ, ଗ୍ରହାବେଶ ଓ ବାୟୁରୋଗ ନାଶକ ଅଟେ ।

### ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ହିଞ୍ଜଳ ଛେଲି, ନିମ୍ବ ଛେଲି ଓ ବଉଳ ଛେଲି ଏହି ତିନି ଛେଲିକୁ ସମାନ ଭାଗରେ ଆଣି ଏକତ୍ର ଜଳରେ ସିଝାଇ ସେହି ଜଳରେ କୁଳି କଲେ ତୁଣ୍ଡଘାଆ ଭଲ ହୁଏ ।

(ଖ) ତଟକା ହିଞ୍ଜଳ ଫୁଲ ଆଣି ଉଷୁନା ଗୁଉଳ ସଙ୍ଗେ ବାଟି ଜାଉ କରି ଗୋରୁମାନଙ୍କୁ ଖୁଆଇଲେ ସେମାନଙ୍କର ତରଳ ଝାଡ଼ା ବନ୍ଦ ହୋଇଯାଏ ।

(ଗ) ହିଞ୍ଜଳ ଗଛର କଅଁଳିଆ ପତ୍ରକୁ ଆଣି ତାହା ସଙ୍ଗରେ ଅଳ୍ପ ଗୋଲମରିଚ ମିଶାଇ ଏକତ୍ର ବାଟି ବଥ, ବାଳମୂଳିଆ ପ୍ରଭୃତିରେ ବୋଳି ଦେଲେ ସବୁ ଶୀଘ୍ର ବସିଯାଏ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ହରିଦ୍ରାର ଉପର ଅଂଶ ରସକୁ କୁଟି ଚୂର୍ଣ୍ଣ କରି ସେହି ଚୂର୍ଣ୍ଣ ସଙ୍ଗରେ ଅଳ୍ପ ଗୁଡ଼ ମିଶାଇ ସେବନ କଲେ ଯାବତୀୟ ବାୟୁ ଓ ଶୂଳରୋଗ ଭଲ ହୁଏ ।

(ଖ) ହରିଦ୍ରାକୁ ଜଳ ସଙ୍ଗେ ଘୋରି ଯେ କୌଣସି ଘାଆରେ ଲଗାଇଲେ ଶୀଘ୍ର ଶୁଖିଯାଏ ।

(ଗ) ହରିଦ୍ରା ଚୂର୍ଣ୍ଣ ୧ ଭରି ନେଇ ଗରମ ଜଳ ସଙ୍ଗରେ ମିଶାଇ ସେବନ କଲେ ଝାଡ଼ା ପରିଷ୍କାର ହୁଏ ।

(ଘ) କିସମିସ୍ ୧ ଭାଗ ଓ ହରିଦ୍ରା ୨ ଭାଗ, ଏକତ୍ର ଅଳ୍ପ ଜଳରେ ବାଟି ମର୍ଦ୍ଦନପୂର୍ବକ ବରକୋଳି ମଞ୍ଜି ସଦୃଶ ବଟିକା ପ୍ରସ୍ତୁତ କରି କିଛିଦିନ ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରାତଃକାଳରେ ସେବନ କଲେ କାସ, ଶ୍ୱାସ, ଅରୁଚି, ଅଜୀର୍ଣ୍ଣ, ଜ୍ୱର, ତୃଷା, ବମନ, ରକ୍ତଦୋଷ, ପିତ୍ତବିକାର, ହୃଦ୍ରୋଗ, ପାଣ୍ଡୁ, କଣ୍ଡୁ, କୁଷ୍ଠ, ଗୁଳ୍ମ, ପ୍ଲୀହା, ପ୍ରମେହ ଓ ଅଗ୍ନିମାନ୍ଦ୍ୟ ପ୍ରଭୃତି ବିନଷ୍ଟ ହୁଏ ।

## ହିଙ୍ଗୁଳ

ହିଙ୍ଗୁଳକୁ ଡାକ୍ତରୀରେ ଇଙ୍ଗିନିୟା ଅକୁଟାଙ୍ଗୁଲା ଏବଂ ସଂସ୍କୃତରେ ଇଙ୍ଗୁଳ, ହିଙ୍ଗୁଳ, ନିଚୁଳ ଓ ଅମ୍ବୁଜ ପ୍ରଭୃତି କୁହାଯାଏ ।

ଆୟୁର୍ବେଦୋକ୍ତ ଗୁଣ

ହିଙ୍ଗୁଳ କଟୁରସ, ମଳସଂଗ୍ରାହକ, ପବିତ୍ରତା କାରକ, ଉଷ୍ଣବୀର୍ଯ୍ୟ ଓ କଫପିତ୍ତ କାରକ ଏବଂ ଭୂତାବେଶ, ଗ୍ରହାବେଶ ଓ ବାୟୁରୋଗ ନାଶକ ଅଟେ ।

ଆୟୁର୍ବେଦୋକ୍ତ ଚିକିତ୍ସା ପ୍ରଣାଳୀ

(କ) ହିଙ୍ଗୁଳ ଛେଲି, ନିମ୍ବ ଛେଲି ଓ ବଉଳ ଛେଲି ଏହି ତିନି ଛେଲିକୁ ସମାନ ଭାଗରେ ଆଣି ଏକତ୍ର ଜଳରେ ସିଝାଇ ସେହି ଜଳରେ କୁଳି କଲେ ତୁଣ୍ଡଘାଆ ଭଲ ହୁଏ ।

(ଖ) ତଟକା ହିଙ୍ଗୁଳ ଫୁଲ ଆଣି ଉଷୁନା ଗୁଉଳ ସଙ୍ଗେ ବାଟି ଜାଉ କରି ଗୋରୁମାନଙ୍କୁ ଖୁଆଇଲେ ସେମାନଙ୍କର ତରଳ ଝାଡ଼ା ବନ୍ଦ ହୋଇଯାଏ ।

(ଗ) ହିଙ୍ଗୁଳ ଗଛର କଅଁଳିଆ ପତ୍ରକୁ ଆଣି ତାହା ସଙ୍ଗରେ ଅଳ୍ପ ଗୋଲମରିଚ ମିଶାଇ ଏକତ୍ର ବାଟି ବଥ, ବାଳମୂଳିଆ ପ୍ରଭୃତିରେ ବୋଳି ଦେଲେ ସବୁ ଶୀଘ୍ର ବସିଯାଏ ।

*ସଂଗ୍ରହ ଓ ସମ୍ପାଦନା :*

ଶ୍ରୀ ରାଜକିଶୋର ପ୍ରଧାନ

ଶ୍ରୀ ଦାଶରଥୀ ମୁଦୁଲି

ଶ୍ରୀ ବାସୁଦେବ ପଣ୍ଡା

ଉଷାରାଣୀ ଦେବୀ

ଜନକଲ୍ୟାଣ ଯୁବକ ସଂଘ, ପୋଢ଼ଙ୍ଗ, ତେଇଶିପୁର, ପୁରୀଙ୍କ ଦ୍ୱାରା ଭାରତ ସରକାରଙ୍କ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ଓ ଓଡ଼ିଶା ସରକାରଙ୍କ ଜଙ୍ଗଲ ଓ ପରିବେଶ ବିଭାଗ ସହାୟତାରେ ଜାତୀୟ ପରିବେଶ ସଚେତନ କାର୍ଯ୍ୟକ୍ରମ **(National Environment Awareness Campaign – 1997)** ପାଇଁ ପ୍ରସ୍ତୁତ ।